॥ ଶ୍ରୀହରିଃ ॥

430▲

# ଗୃହସ୍ଥାଶ୍ରମରେ କିପରି ରହିବା?

गृहस्थमें कैसे रहें ? ( ओड़िआ )



गीताप्रेस गोरखपुर
GITA PRESS, GORAKHPUR [SINCE 1923]

ସ୍ୱାମୀ ରାମସୁଖଦାସ

॥ ଶ୍ରୀହରିଃ ॥

# ଗୃହସ୍ଥାଶ୍ରମରେ କିପରି ରହିବା?

[ସ୍ୱକର୍ତ୍ତବ୍ୟ ପାଳନ ଏବଂ ଅନ୍ୟମାନଙ୍କ ଅଧିକାର ରକ୍ଷା]

**गृहस्थमें कैसे रहें? ( ओड़िआ )**

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ସ୍ୱାମୀ ରାମସୁଖଦାସ

ଭାଷାନ୍ତର—ଶ୍ରୀମତୀ ଶୈଳବାଳା ପୂଜାରୀ
ଶ୍ରୀ ଯଜ୍ଞପ୍ରକାଶ ଦାସ

॥ ଶ୍ରୀହରିଃ ॥

# ବିନମ୍ର ନିବେଦନ

ସମ୍ପ୍ରତି ହିନ୍ଦୁ ସଂସ୍କୃତିର ଆଶ୍ରମ-ବ୍ୟବସ୍ଥା ଛିନ୍ନଭିନ୍ନ ହୋଇଗ୍ଲଲିଛି। ବ୍ରହ୍ମଚର୍ଯ୍ୟାଦି ଗ୍ଳରି ଆଶ୍ରମର ଆଧାରସ୍ୱରୂପ ଗୃହସ୍ଥାଶ୍ରମର ସ୍ଥିତି ଅତି ଶୋଚନୀୟ ହୋଇଗଲାଣି। ଗୃହସ୍ଥ ଲୋକଙ୍କୁ ବିଭିନ୍ନ ସମସ୍ୟା ଗ୍ରାସ କରିଛି, ଫଳରେ ସେମାନେ ନିରାଶା, ଅଶାନ୍ତି ଓ ଚିନ୍ତାପୂର୍ଣ୍ଣ ଜୀବନ ବିତାଉଛନ୍ତି। ପରମ ଶ୍ରଦ୍ଧେୟ ସ୍ୱାମୀ ଶ୍ରୀ ରାମସୁଖଦାସଙ୍କ ନିକଟକୁ ଅନେକ ଗୃହସ୍ଥ ଲୋକ ଆସି ସେମାନଙ୍କ ଜୀବନର ସମସ୍ୟା ପ୍ରକାଶ କରନ୍ତି ଏବଂ ସେଗୁଡ଼ିକର ସମୁଚିତ ସମାଧାନ ପାଇ ସନ୍ତୁଷ୍ଟ ହୁଅନ୍ତି। ଏ ପରିପ୍ରେକ୍ଷୀରେ ଗୃହସ୍ଥାଶ୍ରମ ବିଷୟକ ବିଭିନ୍ନ ସମସ୍ୟାର ସମାଧାନ ତଥା ନାନାବିଧ ଜ୍ଞାତବ୍ୟ ବିଷୟ ସମ୍ବଳିତ ଖଣ୍ଡିଏ ପୁସ୍ତକର ଆବଶ୍ୟକତା ଅନୁଭୂତ ହେଉଥିଲା। ଆମର ଆଶା, ଏହି ପୁସ୍ତକଟି ସେହି ଆବଶ୍ୟକତାକୁ ପୂରଣ କରିପାରିବ।

ପୂର୍ବରୁ 'ଗୃହସ୍ଥରେ କିପରି ରହିବା?' ନାମରେ ଏହି ପୁସ୍ତକଟି ଓଡ଼ିଆରେ ପ୍ରକାଶିତ ହୋଇଥିଲା। ବର୍ତ୍ତମାନ ସେଥିରେ କିଛି ସଂଶୋଧନ କରାଯାଇ 'ଗୃହସ୍ଥାଶ୍ରମରେ କିପରି ରହିବା?' ନାମରେ ପୁନଃ ପ୍ରକାଶିତ କରାଯାଉଛି। ପାଠକମାନଙ୍କୁ ନିବେଦନ ଯେ ସେମାନେ ଏହାକୁ ନିଜେ ପଢ଼ିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ମଧ୍ୟ ପଢ଼ିବାକୁ ପ୍ରେରଣା ଯୋଗାଇବେ। ପ୍ରତ୍ୟେକ ଗୃହରେ ଏହି ପୁସ୍ତକ ରହିବା ଉଚିତ। ବିବାହାଦି ଉତ୍ସବରେ ଏହାକୁ ଉପହାରରୂପେ ବିତରଣ କଲେ ପ୍ରତ୍ୟେକ ପରିବାରରେ ଏହା ସୁଖଶାନ୍ତିମୟ ଜୀବନର ବାର୍ତ୍ତା ପହଞ୍ଚାଇ ପାରିବ।

—ପ୍ରକାଶକ

# ବିଷୟ ସୂଚୀ





॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଗୃହସ୍ଥାଶ୍ରମରେ କିପରି ରହିବା?

**ରୁଦ୍ରୋ ମୁଣ୍ଡଧରୋ ଭୁଜଙ୍ଗସହିତୋ ଗୌରୀ ତୁ ସଦ୍‌ଭୂଷଣା**
**ସ୍କନ୍ଦଃ ଶମ୍ଭୁସୁତଃ ଷଡାନନଯୁତସ୍ତୁଣ୍ଡୀ ଚ ଲମ୍ବୋଦରଃ ।**
**ସିଂହକ୍ରୌଞ୍ଚମୂଷକଂ ଚ ବୃଷଭସ୍ତେଷାଂ ନିଜଂ ବାହନ-**
**ମିତ୍ଥଂ ଶମ୍ଭୁଗୃହେ ବିଭିନ୍ନମତିଷୁ ଚୈକ୍ୟଂ ସଦା ବର୍ତ୍ତତେ ॥**

''ଭଗବାନ ଶଙ୍କର ମୁଣ୍ଡମାଳା ଓ ସର୍ପ ଧାରଣ କରିଥାଆନ୍ତି । ପାର୍ବତୀ ସୁନ୍ଦର ସୁନ୍ଦର ଆଭୂଷଣରେ ସୁଶୋଭିତା ଥାଆନ୍ତି । ଶିବପୁତ୍ର କାର୍ତ୍ତିକେୟଙ୍କର ଛଅଟି ମୁଖ ଥାଏ । ଗଣେଶଙ୍କର ଲମ୍ବା ଶୁଣ୍ଢ ଓ ପୃଥୁଳ ଉଦର ଥାଏ । ଭଗବାନ ଶଙ୍କର ପ୍ରଭୃତିଙ୍କ ବାହନ ଯଥା—ବୃଷଭ, ସିଂହ, ମୟୂର, ମୂଷିକ ଆଦି ଜଣେ ଅନ୍ୟ ଜଣକର ଭକ୍ଷକ । ଏହା ସତ୍ତ୍ୱେ ସେମାନେ ସର୍ବଦା ଏକତ୍ର ରହନ୍ତି ।'' [ଅତଏବ କୁଟୁମ୍ବ ମଧ୍ୟରେ ବିଭିନ୍ନ ସ୍ୱଭାବଯୁକ୍ତ ବ୍ୟକ୍ତି ରହି ସୁଦ୍ଧା ନିଜର ଅଭିମାନ ଓ ସୁଖଭୋଗ ତ୍ୟାଗ କରି ଅନ୍ୟର ହିତ ଓ ସୁଖ ପ୍ରତି ଦୃଷ୍ଟି ରଖି ପରସ୍ପର ପ୍ରେମପୂର୍ବକ ଏକତ୍ର ସହାବସ୍ଥାନ କରିବା ଉଚିତ ।]

## (୧) ଗୃହସ୍ଥ ଧର୍ମ

**ସାନନ୍ଦଂ ସଦନଂ ସୁତାଶ୍ଚ ସୁଧିୟଃ କାନ୍ତା ନ ଦୁର୍ଭାଷିଣୀ**
**ସନ୍ମିତ୍ରଂ ସୁଧନଂ ସ୍ୱଯୋଷିତି ରତିଶ୍ଚାଜ୍ଞାପରାଃ ସେବକାଃ ।**
**ଆତିଥ୍ୟଂ ଶିବପୂଜନଂ ପ୍ରତିଦିନଂ ମୃଷ୍ଟାନ୍ନପାନଂ ଗୃହେ**
**ସାଧୋଃ ସଙ୍ଗମୁପାସତେ ହି ସତତଂ ଧନ୍ୟୋ ଗୃହସ୍ଥାଶ୍ରମଃ ॥**

''ଯେଉଁ ଗୃହରେ ସମସ୍ତେ ସୁଖୀ, ପୁତ୍ର ବୁଦ୍ଧିମାନ୍, ପତ୍ନୀ ମଧୁରଭାଷିଣୀ, ମିତ୍ର ବିଶ୍ୱସନୀୟ, ପତି ପତ୍ନୀବ୍ରତ, ଭୃତ୍ୟ ଆଜ୍ଞାକାରୀ ହୋଇଥାଆନ୍ତି ଏବଂ ଯେଉଁଠାରେ ନିତ୍ୟ ଅତିଥି ସେବା ଓ ଭଗବାନ ଶଙ୍କରଙ୍କ ପୂଜା ହୁଏ, ଖାଦ୍ୟପେୟ ପବିତ୍ର ଓ ସୁନ୍ଦର ହୋଇଥାଏ, ନିତିଦିନ ସାଧୁସନ୍ଥଙ୍କ ସତ୍‌ସଙ୍ଗ କରାଯାଏ—ସେହି ଗୃହସ୍ଥ ଆଶ୍ରମ ଧନ୍ୟ ଅଟେ ।''

**ପ୍ରଶ୍ନ**—ବିବାହ କାହିଁକି କରିବା? ଏହା କଣ ଆବଶ୍ୟକ?

**ଉତ୍ତର**—ଦୁଇ ପ୍ରକାର ବ୍ରହ୍ମଚାରୀ ଥାଆନ୍ତି—ନୈଷ୍ଠିକ ବ୍ରହ୍ମଚାରୀ ଓ ଉପକୁର୍ବାଣ ବ୍ରହ୍ମଚାରୀ । ଯେଉଁମାନେ ଆଜୀବନ ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି, ସେମାନଙ୍କୁ ନୈଷ୍ଠିକ

ବ୍ରହ୍ମଚାରୀ କୁହାଯାଏ। ଯେଉଁମାନେ ବିଚାର ଦ୍ୱାରା ଭୋଗଲାଳସାକୁ ଦୂର କରିପାରନ୍ତି ନାହିଁ ଓ ଲାଳସା ପୂର୍ଣ୍ଣ କରିବା ପାଇଁ ବିବାହ କରନ୍ତି, ସେମାନଙ୍କୁ ଉପକୁର୍ବାଣ ବ୍ରହ୍ମଚାରୀ କହନ୍ତି। ଏଭଳି ବିବାହର ଉଦ୍ଦେଶ୍ୟ ହେଉଛି—ସେମାନେ ବିବାହ କରି ଅନୁଭବ କରନ୍ତୁ ଯେ ଭୋଗ ଉପଭୋଗ କରିବା ଦ୍ୱାରା ଭୋଗେଚ୍ଛା ନଷ୍ଟ ହୁଏ ନାହିଁ। ତେଣୁ ଗୃହସ୍ଥାଶ୍ରମ ପରେ ବାନପ୍ରସ୍ଥ ଓ ସନ୍ନ୍ୟାସ ଆଶ୍ରମରେ ପ୍ରବେଶ କରିବାର ବିଧାନ ଅଛି। ଆଜୀବନ ଗୃହସ୍ଥ ହୋଇ ଭୋଗ ଉପଭୋଗ କରିବା ମନୁଷ୍ୟତା ନୁହେଁ।

ଯାହାର ଭୋଗେଚ୍ଛା ରହିଛି ଅଥବା ଯେ ବଂଶ ପରମ୍ପରା ରକ୍ଷା କରିବା ପାଇଁ ଚାହେଁ ଓ ସେଥିପାଇଁ ତା'ର କେହି ଭାଇ ନାହିଁ, ସେପରି ଲୋକ ବିବାହ କରିବା ଆବଶ୍ୟକ। ଯଦି ଉଲ୍ଲିଖିତ ଦୁଇ ଇଚ୍ଛା ନାହିଁ, ତାଙ୍କ ପକ୍ଷେ ବିବାହ କରିବାର ଆବଶ୍ୟକତା ନାହିଁ। ଶାସ୍ତ୍ର କହିଛନ୍ତି—**'ନିବୃତ୍ତିସ୍ତୁ ମହାଫଳା'** ଅର୍ଥାତ୍ ନିବୃତ୍ତି ହିଁ ଶ୍ରେଷ୍ଠ ପନ୍ଥା।

**ପ୍ରଶ୍ନ**—କଳିଯୁଗରେ ସନ୍ନ୍ୟାସ ନେବାକୁ ମନା କରାଯାଇଛି। ତା'ହେଲେ ମନୁଷ୍ୟ କିପରି ନିବୃତ୍ତି କରିବ?

**ଉତ୍ତର**—କଳିଯୁଗରେ ସନ୍ନ୍ୟାସ ଧର୍ମ ପାଳନ କରିବା କଠିନ ବ୍ୟାପାର। ତେଣୁ ସନ୍ନ୍ୟାସ ନେବାକୁ ମନା କରାଯାଇଛି। ତେବେ ସରକାରୀ କର୍ମଚାରୀ ଚାକିରିରୁ ଅବସର ନେବା ପରି ମନୁଷ୍ୟ ଉପଯୁକ୍ତ ସମୟରେ ସନ୍ତାନମାନଙ୍କୁ ଗୃହକାର୍ଯ୍ୟର ଦାୟିତ୍ୱ ଦେଇ ନିଜେ ଘରେ ରହି ଭଜନ-ସ୍ମରଣ କରିବା ଉଚିତ। ସନ୍ତାନମାନଙ୍କ ଇଚ୍ଛା ଥିଲେ ଭୋଜନ, ବସ୍ତ୍ର ଆଦି ନିର୍ବାହ ଦ୍ରବ୍ୟ ପାଇଁ ସେ ଗୃହ ସହିତ ସମ୍ବନ୍ଧ ରଖି ପାରନ୍ତି। ଯଦି ସେମାନେ ସେପରି ଚାହାନ୍ତି ନାହିଁ, ତାହାହେଲେ ସେହି ସମ୍ବନ୍ଧ ମଧ୍ୟ ଛାଡ଼ିଦେବା ଉଚିତ। ନିର୍ବାହ ପାଇଁ ଚିନ୍ତା କରିବା ଅନାବଶ୍ୟକ; କାରଣ ପ୍ରାରବ୍ଧ ଅନୁସାରେ ବସ୍ତୁ ମିଳିଯିବ—

**ପ୍ରାରବ୍ଧ ପହଲେ ରଚା, ପୀଛେ ରଚା ସରୀର।**
**ତୁଲସୀ ଚିନ୍ତା କ୍ୟୋଁ କରେ, ଭଜ ଲେ ଶ୍ରୀରଘୁବୀର॥**

**ପ୍ରଶ୍ନ**—ଗୃହସ୍ଥର ମୁଖ୍ୟ ଧର୍ମ କ'ଣ?

**ଉତ୍ତର**—ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ବାନପ୍ରସ୍ଥ ଓ ସନ୍ନ୍ୟାସ—ଏହି ଚାରି ଆଶ୍ରମର ସେବା କରିବା ଗୃହସ୍ଥର ମୁଖ୍ୟ ଧର୍ମ ଅଟେ। ଗୃହସ୍ଥ ହିଁ ସମସ୍ତଙ୍କର ମାତାପିତା, ପାଳକ ଓ ସଂରକ୍ଷକ। ଗୃହସ୍ଥଠାରୁ ହିଁ ବ୍ରହ୍ମଚାରୀ, ଗୃହସ୍ଥ, ବାନପ୍ରସ୍ଥ ଓ ସନ୍ନ୍ୟାସୀ ଉତ୍ପନ୍ନ ହୁଅନ୍ତି ଏବଂ ତା'ଦ୍ୱାରା ପାଳିତ ଓ ସଂରକ୍ଷିତ ରହନ୍ତି। ତେଣୁ ଏମାନଙ୍କର ପାଳନପୋଷଣ କରିବା ଗୃହସ୍ଥର ମୁଖ୍ୟ ଧର୍ମ।

ଅତିଥି-ସତ୍କାର, ଗୃହପାଳିତ ପଶୁମାନଙ୍କ ପାଳନ,ଏପରି କି ଘରେ ରହୁଥିବା ମୂଷା ଆଦି ଛୋଟ ଛୋଟ ଜୀବମାନଙ୍କୁ ଗୃହବାସୀ ମନେକରି ସେମାନଙ୍କର ପୋଷଣ କରିବା ମଧ୍ୟ ଗୃହସ୍ଥର ମୁଖ୍ୟ ଧର୍ମ ଅଟେ । ସେହିପରି ଦେବତା, ଋଷି, ମୁନି ଆଦିଙ୍କ ସେବା କରିବା, ପିତୃପୁରୁଷଙ୍କୁ ପିଣ୍ଡଜଳ ଦେବା ଓ ପରମାତ୍ମାଙ୍କ ଭଜନ-ସ୍ମରଣ କରିବା ମଧ୍ୟ ଗୃହସ୍ଥର ମୁଖ୍ୟ ଧର୍ମ ଅଟେ ।

**ପ୍ରଶ୍ନ**—ଗୃହସ୍ଥାଶ୍ରମରେ କିପରି ରହିବା ଉଚିତ?

**ଉତ୍ତର**—ମୁକ୍ତି ନିମନ୍ତେ ମନୁଷ୍ୟଶରୀର ଓ ତନ୍ମଧ୍ୟରେ ଗୃହସ୍ଥ-ଆଶ୍ରମ ପାଠଶାଳା ସଦୃଶ । ଭୋଗ ଉପଭୋଗ କରିବା ଓ ଆରାମ ପାଇବା ପାଇଁ ମନୁଷ୍ୟଦେହ ମିଳି ନାହିଁ— ***'ଏହି ତନ କର ଫଲ ବିଷୟ ନ ଭାଈ'*** (ମାନସ, ଉତ୍ତର. ୪୪ । ୧) । ଶାସ୍ତ୍ରବିହିତ ଯଜ୍ଞ ଆଦି କର୍ମ କରି ବ୍ରହ୍ମଲୋକ ପ୍ରାପ୍ତ ହେବା ମୁଖ୍ୟ ଉଦ୍ଦେଶ୍ୟ ନୁହେଁ । କାରଣ ସେଠାକୁ ଯାଇ ପୁନର୍ବାର ଫେରିବାକୁ ହୁଏ । **'ଆବ୍ରହ୍ମଭୁବନାଲ୍ଲୋକାଃ ପୁନରାବର୍ତ୍ତିନଃ'** (ଗୀତା ୮ । ୧୬) । ତେଣୁ ଜୀବମାନଙ୍କ ହିତଭାବନା ରଖି ଗୃହସ୍ଥାଶ୍ରମରେ ରହିବା ଆବଶ୍ୟକ । ଯଥାଶକ୍ତି ତନୁ, ମନ, ବୁଦ୍ଧି, ଯୋଗ୍ୟତା, ଅଧିକାର ଦ୍ୱାରା ଅନ୍ୟମାନଙ୍କୁ ସୁଖୀ କରାଇବା ଆବଶ୍ୟକ । ଅନ୍ୟର ସୁଖ-ସୁବିଧା ପାଇଁ ନିଜର ସୁଖକୁ ତ୍ୟାଗ କରିବା ପ୍ରକୃତ ମନୁଷ୍ୟତା ଅଟେ ।

**ପ୍ରଶ୍ନ**—ଗୃହସ୍ଥ ଆଶ୍ରମରେ କାର୍ଯ୍ୟ କରିବାବେଳେ ଯେଉଁ ହିଂସା ହୋଇଥାଏ, ସେଥିରୁ କିପରି ଉଦ୍ଧାର ପାଇବା?

**ଉତ୍ତର**—ଗୃହସ୍ଥାଶ୍ରମରେ ପାଞ୍ଚ ପ୍ରକାର ହିଂସା ହୋଇଥାଏ; ଯଥା—

(୧) ଖାଦ୍ୟ ରନ୍ଧନବେଳେ ଅଗ୍ନିରେ ପଡ଼ି ଛୋଟ ଛୋଟ ଜୀବ ତଥା ଜାଳେଣୀ କାଠରେ ଥିବା ପୋକ ପ୍ରଭୃତି ମରିଯାଆନ୍ତି । (୨) ପାଣି ମାଠିଆ ଏପଟ ସେପଟ କରିବାବେଳେ କେତେକ ଜୀବ ମରିଯାଆନ୍ତି । (୩) ଝାଡ଼ୁ ଦେବାବେଳେ ବହୁ ଜୀବ ପ୍ରାଣ ହରାନ୍ତି । (୪) ପେଷଣୀ (ଚକି)ରେ ଶସ୍ୟ ପେଷିବା ବେଳେ ଛୋଟ ଛୋଟ ଜୀବ ପେଷି ହୋଇଯାଆନ୍ତି । (୫) ଢିଙ୍କିରେ ଧାନ କୁଟିବାବେଳେ କେତେକ ଜୀବ ମରନ୍ତି । ଏହି ସବୁ ହିଂସାରୁ ଉଦ୍ଧାର ପାଇବା ପାଇଁ ଗୃହସ୍ଥ ବ୍ୟକ୍ତି ପ୍ରତିଦିନ ବଳିବୈଶ୍ୱଦେବ ଓ ପଞ୍ଚ-ମହାଯଜ୍ଞ କରିବା ଉଚିତ । ଯେଉଁ ବ୍ୟକ୍ତି ସର୍ବଥା ଭଗବାନଙ୍କ ଶରଣାପନ୍ନ ହୁଏ, ତାକୁ ହିଂସା ଲାଗେ ନାହିଁ । ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ ।

**ପ୍ରଶ୍ନ**—ଆମେ ତ ନିଜେ ପେଷଣୀ ବା ଢିଙ୍କି ବ୍ୟବହାର କରୁ ନାହୁଁ । ଆମକୁ ହିଂସା ଲାଗିବ କାହିଁକି?

**ଉତ୍ତର**—ଆମେ ସେସବୁ ବ୍ୟବହାର କରୁ ନାହୁଁ ସତ, କିନ୍ତୁ ପେଷା ହୋଇଥିବା ଅଟା ଓ କୁଟା ହୋଇଥିବା ଚାଉଳ ଖାଉ । ସେସବୁ ତିଆରି କରିବାରେ ଯେଉଁ ହିଂସା ହୋଇଥାଏ, ତାହା ଆମକୁ ଲାଗେ ।

**ପ୍ରଶ୍ନ**—କୃଷିକର୍ମରେ ଅନେକ ଜୀବ ମରି ଥାଆନ୍ତି । ତେବେ କୃଷକ କୃଷି କରିବ ନା ନାହିଁ?

**ଉତ୍ତର**—ସେ ନିଶ୍ଚୟ କୃଷି କରିବ, ପରନ୍ତୁ ହିଂସା ନ କରିବା ପାଇଁ ଯତ୍ନବାନ୍ ହେବ । କୃଷି କରିବା କୃଷକର କର୍ତ୍ତବ୍ୟ ହୋଇଥିବାରୁ ତାକୁ କମ୍ ପାପ ଲାଗେ । ତଥାପି ସାବଧାନତାପୂର୍ବକ ନ୍ୟୂନତମ ହିଂସା କରି ସେ ନିଜର କର୍ତ୍ତବ୍ୟ ସମ୍ପାଦନ କରିବ ।

**ପ୍ରଶ୍ନ**—ଆଜିକାଲି କୃଷକମାନେ ଫସଲର ସୁରକ୍ଷା ପାଇଁ କୀଟନାଶକ ଔଷଧ ବ୍ୟବହାର କରୁଛନ୍ତି । ଏହା ଠିକ୍ କି?

**ଉତ୍ତର**—କୃଷକମାନେ ଏପରି କାର୍ଯ୍ୟ କରିବା ଉଚିତ ନୁହେଁ । ପୂର୍ବେ କୀଟନାଶକ ଔଷଧ ପ୍ରୟୋଗ ନ କରି ଖାଦ୍ୟଶସ୍ୟ ଶସ୍ତାରେ ମିଳୁଥିଲା । ଆଜିକାଲି ଜୀବହିଂସା କରିବା ସଙ୍ଗେ ସଙ୍ଗେ ମୂଲ୍ୟ ବୃଦ୍ଧି ପାଇଛି । ଉପରକୁ ଜଣାପଡୁଛି ଯେ କୀଟପତଙ୍ଗଙ୍କୁ ମାରିଦେଲେ ଶସ୍ୟ ଉପାର୍ଜନ ଅଧିକ ହେଉଛି, କିନ୍ତୁ ଏହାର ପରିଣାମ ଭଲ ହେବ ନାହିଁ ।

**ପ୍ରଶ୍ନ**—ଶାସ୍ତ୍ରରେ ଗୃହସ୍ଥ ପାଇଁ ପାଞ୍ଚଟି ଋଣ କଥା କୁହାଯାଇଛି—ପିତୃଋଣ, ଦେବଋଣ, ଋଷିଋଣ, ଭୂତଋଣ ଓ ମନୁଷ୍ୟ-ଋଣ । ଏଥିମଧ୍ୟରୁ ପିତୃଋଣ କ'ଣ ଓ ତାହା କିପରି ପରିଶୋଧ ହେବ?

**ଉତ୍ତର**—ବାପା, ମାଆ, ଜେଜେବାପା, ଜେଜେମା, ଅଜା, ଆଈ ପ୍ରଭୃତିଙ୍କ ମୃତ୍ୟୁ ପରେ ପରେ ଯେଉଁ କାର୍ଯ୍ୟ କରାଯାଏ, ସେସବୁ ପ୍ରେତକାର୍ଯ୍ୟ । ପରମ୍ପରାକ୍ରମେ ଶ୍ରାଦ୍ଧ-ତର୍ପଣ କରିବା, ପିଣ୍ଡଜଳ ଦେବା ଆଦି ପିତୃକାର୍ଯ୍ୟ । ମୃତ୍ୟୁପରେ ଜୀବ ଦେବତା, ମନୁଷ୍ୟ, ପଶୁ-ପକ୍ଷୀ, ଭୂତ-ପ୍ରେତ, ବୃକ୍ଷ-ଲତା ଆଦି ଯେଉଁ ଦେହ ପାଏ, ତାହାର ନାମ ପିତୃ ।

ମାତା-ପିତାଙ୍କ ରଜବୀର୍ଯ୍ୟରୁ ଶରୀର ତିଆରି ହୁଏ । ମାତୃ-ଦୁଗ୍ଧ ଓ ପିତାଙ୍କ ଅର୍ଜିତ ଅନ୍ନରୁ ଦେହର ପାଳନପୋଷଣ ହୁଏ । ପିତାଙ୍କ ଧନରୁ ଶିକ୍ଷା ଓ ଯୋଗ୍ୟତା ଲାଭ ହୁଏ । ମାତା-ପିତାଙ୍କ ଉଦ୍ୟମରୁ ବିବାହ ହୁଏ । ଏହିରୂପେ ପୁତ୍ର ଉପରେ ମାତା-ପିତାଙ୍କ ଋଣ ରହେ । ବଂଶପରମ୍ପରାକ୍ରମେ ରହି ଆସୁଥିବା ଏହି ପିତୃଋଣରୁ ମୁକ୍ତ ହେବା ନିମନ୍ତେ ଓ ସେମାନଙ୍କର ସଦ୍‌ଗତି ନିମନ୍ତେ ପିତୃପୁରୁଷଙ୍କ ନାମରେ ଶ୍ରାଦ୍ଧତର୍ପଣ କରିବା ବା ପିଣ୍ଡଜଳ ଦେବା ଆବଶ୍ୟକ ।

ପୁତ୍ର ମାତା-ପିତାଙ୍କ ନାମରେ ଆଜୀବନ ପିଣ୍ଡଦାନ କରେ। ପରବର୍ତ୍ତୀ ସମୟରେ ସନ୍ତାନ ଜାତ କରି ଏହି ପିଣ୍ଡଦାନ କ୍ରିୟା ଅବ୍ୟାହତ ନ ରଖିଲେ ସେ ପିତୃଋଣରୁ ମୁକ୍ତ ହୁଏ ନାହିଁ। ସନ୍ତାନ ଜାତ ହେବା ପରେ ପିତୃଋଣ ସନ୍ତାନ ଉପରକୁ ଆସିଯାଏ। ପିତୃପୁରୁଷମାନେ ପିଣ୍ଡପାଣି ପାଇଁ ଆଶା ରଖିଥାନ୍ତି। ପୁତ୍ରର ସନ୍ତାନ ନ ହେଲେ ପିଣ୍ଡ ନ ମିଳିବା ଆଶଙ୍କାରେ ସେମାନେ ଦୁଃଖୀ ହୁଅନ୍ତି। ପିଣ୍ଡ ପାଇଲେ ପିତୃପୁରୁଷ ତୃପ୍ତ ହୁଅନ୍ତି। ତେଣୁ ସନ୍ତାନ ଲାଭ କରି ପରମ୍ପରା ରକ୍ଷା କରିବା ଉଚିତ।

**ପ୍ରଶ୍ନ**—ପିତୃପୁରୁଷଙ୍କ ନାମରେ ଦିଆଯାଉଥିବା ପଦାର୍ଥ ସେମାନଙ୍କୁ ମିଳେ କି?

**ଉତ୍ତର**—ହଁ, ମିଳେ। ମୃତ୍ୟୁପରେ ସେମାନେ ଯେକୌଣସି ଦେହ ଲାଭ କଲେ ସୁଦ୍ଧା, ଦିଆଯାଉଥିବା ପିଣ୍ଡ ସେମାନଙ୍କୁ ଆବଶ୍ୟକ ହେଉଥିବା ଖାଦ୍ୟପଦାର୍ଥ ରୂପରେ ପ୍ରାପ୍ତ ହୁଏ। କେହି ପଶୁଦେହ ପାଇଥିଲେ ପିଣ୍ଡ ଘାସ ହୋଇଯାଏ। କେହି ଦେବଦେହକୁ ଗଲେ ପିଣ୍ଡ ଅମୃତ ହୋଇଯାଏ। କେହି ଆମ ଦେଶରୁ ମନିଅର୍ଡର ଯୋଗେ ଟଙ୍କା ଆମେରିକାକୁ ପଠାଇଲେ, ତାହା ଯେପରି ଡଲାର ହୋଇ ନିର୍ଦ୍ଦିଷ୍ଟ ଲୋକକୁ ମିଳେ, ପିତୃପୁରୁଷଙ୍କ ନାମରେ ଦିଆଯାଇଥିବା ପିଣ୍ଡଜଳ ଓ ଅନ୍ୟାନ୍ୟ ଦ୍ରବ୍ୟଦାନକୁ ସେହିଭଳି ବୁଝିବାକୁ ହେବ।

ଆଜି ଆମ୍ଭମାନଙ୍କୁ ଯେଉଁ ଅନ୍ନ-ବସ୍ତ୍ର ଆଦି ମିଳୁଅଛି, ତାହା ଆମର ପୂର୍ବକୃତ ପୁଣ୍ୟର ଫଳ ହୋଇପାରେ ଅଥବା ଆମ ପୂର୍ବଜନ୍ମର ପୁତ୍ରପୌତ୍ରାଦିଙ୍କ ଶ୍ରାଦ୍ଧ-ତର୍ପଣର ଫଳ ମଧ୍ୟ ହୋଇପାରେ। ଯାହା ହେଲେ ବି ଏହା ଆମର ପ୍ରାରବ୍ଧ।

ମନେକର ଜଣେ ବ୍ୟକ୍ତି ବ୍ୟାଙ୍କରେ ଲକ୍ଷେ ଟଙ୍କା ଜମା ରଖିଛନ୍ତି—କିଛି ନିଜ ନାମରେ, କିଛି ପତ୍ନୀଙ୍କ ନାମରେ ଓ କିଛି ପୁତ୍ର ନାମରେ। କେବଳ ନିଜ ନାମରେ ଜମା ରଖିଥିବା ଟଙ୍କା ହିଁ ସେ ଉଠାଇ ପାରିବେ, ପୁତ୍ର ବା ସ୍ତ୍ରୀର ଟଙ୍କା ନୁହେଁ। ସେହିପରି ପିତୃପୁରୁଷଙ୍କ ନାମରେ ଦିଆଯାଉଥିବା ପିଣ୍ଡ ସେମାନଙ୍କୁ ହିଁ ମିଳେ, ଆମକୁ ନୁହେଁ। ଅବଶ୍ୟ, ଜୀବିତ ଥିବା ସମୟରେ ଗୟାକୁ ଯାଇ ନିଜ ନାମରେ ପିଣ୍ଡ ଦେଲେ ମୃତ୍ୟୁପରେ ତାହା ନିଜକୁ ମିଳିଥାଏ। ଗୟାରେ ପଶୁ-ପକ୍ଷୀଙ୍କ ନାମରେ ଦିଆଯାଉଥିବା ପିଣ୍ଡ ମଧ୍ୟ ସେମାନଙ୍କୁ ମିଳେ। ଜଣେ ବ୍ୟକ୍ତି ତାଙ୍କ ଗାଈକୁ ବହୁତ ସ୍ନେହ କରୁଥିଲେ। ଗାଈ ମରିଯିବା ପରେ ସେହି ବ୍ୟକ୍ତିଙ୍କୁ ସ୍ୱପ୍ନରେ ଗାଈ ଦୁଃଖୀ ଥିବା ପରି ଦେଖାଗଲା। ଗୟା ଯାଇ ସେ ଗାଈ ନାମରେ ପିଣ୍ଡ ଦେଲେ। ଏହା ଫଳରେ ସେ ସ୍ୱପ୍ନାବସ୍ଥାରେ ଗାଈ ଅତି ପ୍ରସନ୍ନ ଥିବାର ଦେଖିଲେ।

ଆମ ପାଖରେ ଥିବା ଧନ ମଧ୍ୟରୁ କିଛି ଆମର ନିଜ ଅର୍ଜିତ ଏବଂ ଆଉ କିଛି

ଆମ ପୂର୍ବପୁରୁଷଙ୍କ ଅର୍ଜିତ। ସ୍ୱ-ଅର୍ଜିତ ଧନ ଉପରେ ଆମର ଅଧିକାର ଅଛି, ପୂର୍ବପୁରୁଷଙ୍କ ଧନ ଉପରେ ଆମର ସେତେ ଅଧିକାର ନାହିଁ। ବଂଶପରମ୍ପରା କ୍ରମରେ ପୂର୍ବପୁରୁଷଙ୍କ ଧନ ଉପରେ ଆମ ପୁତ୍ରପୌତ୍ରଙ୍କ ଅଧିକାର ରହିଛି। ଏଣୁ ସେମାନଙ୍କ ଦ୍ୱାରା ପ୍ରଦତ୍ତ ପିଣ୍ଡ ପିତୃପୁରୁଷଙ୍କୁ ମିଳେ।

ମୃତ୍ୟୁପରେ ସମସ୍ତେ ଯେ ପିତୃଲୋକକୁ ଯାଆନ୍ତି, ଏପରି କୌଣସି ନିୟମ ନାହିଁ। ନିଜ ନିଜ କର୍ମ ଅନୁସାରେ ଗତି ଓ ଫଳ ମିଳେ।

**ପ୍ରଶ୍ନ**—ଯଦି କାହାର ମାତା-ପିତା ମୁକ୍ତ ହୋଇ ପରମଧାମକୁ ଚାଲିଯାଇଥାନ୍ତି, ତାହାହେଲେ ତାଙ୍କ ନାମରେ ଦିଆଯାଉଥିବା ପିଣ୍ଡ କ'ଣ ହେବ?

**ଉତ୍ତର**—ମାତା-ପିତା ମୁକ୍ତ ହୋଇ ପରମଧାମକୁ ଯିବା ବିଷୟ ପୁତ୍ରକୁ ଗୋଚର ହୁଏ ନାହିଁ। ପରନ୍ତୁ ପୁତ୍ର ଆଦରପୂର୍ବକ ସେମାନଙ୍କ ନାମରେ ଯେଉଁ ପିଣ୍ଡଦାନ କରେ ବା ଦାନପୁଣ୍ୟ କରେ, ସେସବୁ ତା' ନିଜ ନାମରେ ଜମା ହୋଇ ରହେ ଓ ମୃତ୍ୟୁପରେ ତାକୁ ମିଳେ। ଧରାଯାଉ ଆମେ ଆମର ବନ୍ଧୁଙ୍କ ନିକଟକୁ ବନ୍ଧେ ଠିକଣାରେ ଟଙ୍କା ପଠାଇଲୁ। ସେ ସେଠାରେ ନ ଥିଲେ ଟଙ୍କା ଆମ ପାଖକୁ ନିଶ୍ଚୟ ଫେରି ଆସିବ।

**ପ୍ରଶ୍ନ**—ସନ୍ତାନ ଉତ୍ପନ୍ନ ନ କରି କଣ ବ୍ୟକ୍ତି ପିତୃଋଣରୁ ମୁକ୍ତ ହୋଇ ପାରିବ ନାହିଁ?

**ଉତ୍ତର**—ହଁ, ମୁକ୍ତ ହୋଇ ପାରିବ। ଯେଉଁ ବ୍ୟକ୍ତି ସର୍ବଥା ପ୍ରଭୁଙ୍କ ଠାରେ ଶରଣାପନ୍ନ, ତା'ଉପରେ କୌଣସି ଋଣ ରହେ ନାହିଁ—

**ଦେବର୍ଷି ଭୂତାପ୍ତନୃଣାଂ ପିତୃଣାଂ ନ କିଙ୍କରୋ ନାୟମୃଣୀ ଚ ରାଜନ୍।**
**ସର୍ବାତ୍ମନା ଯଃ ଶରଣଂ ଶରଣ୍ୟଂ ଗତୋ ମୁକୁନ୍ଦଂ ପରିହୃତ୍ୟ କର୍ତ୍ତମ୍॥**

(ଶ୍ରୀମଦ୍‌ଭାଗବତ ୧୧।୫।୪୧)

ଅର୍ଥାତ୍—"ରାଜନ୍! ଯେଉଁ ବ୍ୟକ୍ତି ସମସ୍ତ କାର୍ଯ୍ୟ ଛାଡ଼ି ପୂର୍ଣ୍ଣରୂପେ ଭଗବାନଙ୍କ ଠାରେ ଶରଣାପନ୍ନ, ସେ ଦେବତା, ଋଷି, ପ୍ରାଣୀ, କୁଟୁମ୍ବଜନ ଓ ପିତୃଗଣ କାହାର ଋଣୀ ରହେ ନାହିଁ, କାହାର ଅଧୀନସ୍ଥ ହୁଏ ନାହିଁ।"

**ପ୍ରଶ୍ନ**—ଦେବଋଣ କ'ଣ ଓ ସେଥିରୁ କିପରି ମୁକ୍ତି ମିଳିବ?

**ଉତ୍ତର**—ବର୍ଷା, ଉତ୍ତାପ ଓ ବାୟୁ ଯୋଗୁଁ ଆମେ ବଞ୍ଚିଛୁ। ପୃଥିବୀ ଆମମାନଙ୍କୁ ଧାରଣ କରିଛି। ଦିନରେ ସୂର୍ଯ୍ୟ ଓ ରାତ୍ରିରେ ଚନ୍ଦ୍ର ଆଲୋକ ଦେଉଛନ୍ତି। ସମସ୍ତଙ୍କ ଉପରେ ଆମର ଜୀବନ ନିର୍ଭର କରୁଛି। ଏସବୁ ଆମର ଦେବଋଣ। ହୋମ-ଯଜ୍ଞାଦି ଦ୍ୱାରା ଏହି ଦେବତାମାନେ ତୁଷ୍ଟ ହୁଅନ୍ତି ଓ ଆମେ ଦେବଋଣରୁ ମୁକ୍ତ ହେଉ।

**ପ୍ରଶ୍ନ**—ଋଷିଋଣ କ'ଣ? ତାହା କିପରି ପରିଶୋଧ କରାଯିବ?

**ଉତ୍ତର**—ଋଷି, ମୁନି ଓ ସନ୍ଥ-ମହାତ୍ମାମାନେ ଯେଉଁ ସଦ୍‌ଗ୍ରନ୍ଥ ଲେଖିଯାଇଛନ୍ତି, ସେଥିରୁ ଆମ୍ଭମାନଙ୍କୁ କର୍ତ୍ତବ୍ୟ-ଅକର୍ତ୍ତବ୍ୟର ଜ୍ଞାନ ମିଳେ, ସତ୍‌ଶିକ୍ଷା ପ୍ରାପ୍ତ ହୁଏ। ସେସବୁ ଆମ ଉପରେ ଋଣ। ସେମାନଙ୍କ ଗ୍ରନ୍ଥ ସ୍ୱାଧ୍ୟାୟ କରିବା, ସଂଧ୍ୟା ଗାୟତ୍ରୀ ଆଦି ଅନୁଷ୍ଠାନ କରିବା ଦ୍ୱାରା ଋଷିଋଣ ପରିଶୋଧ କରାଯାଏ।

**ପ୍ରଶ୍ନ**—ଭୂତଋଣ କ'ଣ? ତାହା କିପରି ପରିଶୋଧ କରାଯିବ?

**ଉତ୍ତର**—ଗାଈ, ଛେଳି, ଘୋଡ଼ା ଆଦି ପ୍ରାଣୀ ଆମର ଜୀବନ ନିର୍ବାହରେ ସହାୟକ ଅଟନ୍ତି। ସେହିପରି ବୃକ୍ଷଲତା ପ୍ରଭୃତି ଆମକୁ ପତ୍ର, ଫୁଲ, ଫଳ, କାଠ ଆଦି ଯୋଗାଇ ଦିଅନ୍ତି। ଆମ ଉପରେ ଏସବୁ ଋଣ ରହିଛି। ପଶୁ-ପକ୍ଷୀମାନଙ୍କୁ ଘାସ, ଖାଦ୍ୟ, ଜଳ ଆଦି ଦେବା ଏବଂ ବୃକ୍ଷଲତାକୁ ସାର, ଜଳ ଆଦି ଦେବା ଦ୍ୱାରା ଆମେ ଭୂତଋଣ ପରିଶୋଧ କରୁ।

**ପ୍ରଶ୍ନ**—ମନୁଷ୍ୟଋଣ କ'ଣ? ତାହା କିପରି ପରିଶୋଧ କରାଯିବ?

**ଉତ୍ତର**—ସମସ୍ତଙ୍କ ସାହାଯ୍ୟରୁ ଆମେ ଜୀବନନିର୍ବାହ କରୁଅଛୁ। ଆମ ପାଇଁ କେହି ସଡ଼କ ତିଆରି କରିଛନ୍ତି, କେହି କୂପ-ପୁଷ୍କରିଣୀ ଖୋଦନ କରିଛନ୍ତି, କେହି ବୃକ୍ଷରୋପଣ କରିଛନ୍ତି, କେହି ଖାଦ୍ୟ ପଦାର୍ଥ ଉତ୍ପାଦନ କରୁଛନ୍ତି—ଏସବୁ ଆମ ଉପରେ ସେମାନଙ୍କ ଋଣ। ଅନ୍ୟମାନଙ୍କର ସୁଖ-ସୁବିଧା ପାଇଁ ଆମେ କୂପ, ପୁଷ୍କରିଣୀ ଖୋଦନ କଲେ, ସଡ଼କ, ଉପବନ, ଧର୍ମଶାଳା ଆଦି ନିର୍ମାଣ କଲେ, ଅନ୍ନଛତ୍ର ଖୋଲିଲେ ଆମେ ମନୁଷ୍ୟଋଣ ପରିଶୋଧ କରିପାରିବା।

ପିତୃଋଣ, ଦେବଋଣ, ଋଷିଋଣ, ଭୂତଋଣ ଓ ମନୁଷ୍ୟଋଣ—ଏହି ପାଞ୍ଚ ଋଣ ପରିଶୋଧ କରିବା ଗୃହସ୍ଥର କର୍ତ୍ତବ୍ୟ। ଯେଉଁମାନେ ସର୍ବତୋଭାବେ ପ୍ରଭୁଙ୍କ ଠାରେ ଶରଣାପନ୍ନ, ସେମାନେ ପିତୃ, ଦେବ ଆଦି କାହାର ଋଣୀ ହୁଅନ୍ତି ନାହିଁ। ସେମାନେ ସବୁ ଋଣରୁ ମୁକ୍ତି ପାଆନ୍ତି।

**ପ୍ରଶ୍ନ**—ସନ୍ତାନ ଜନ୍ମ ନ ହେଲେ, ଆତ୍ମୀୟ ସ୍ୱଜନମାନଙ୍କର ପୁତ୍ରକନ୍ୟାଙ୍କୁ ଅଥବା ଅନାଥ ବାଳକ-ବାଳିକାଙ୍କୁ ଦତ୍ତକ ସନ୍ତାନ କରିବା ଉଚିତ କି?

**ଉତ୍ତର**—ଆଜିକାଲି ବେଳରେ ଦତ୍ତକ ପୁତ୍ର ନ କରିବା ଭଲ। ଜନ୍ମିତ ପୁତ୍ରମାନେ ଯେତେବେଳେ ସେବା କରୁ ନାହାନ୍ତି ଓ ଆଦେଶ ମାନୁ ନାହାନ୍ତି, ଦତ୍ତକ ପୁତ୍ର ଠାରେ କି ଭରସା? ସେ ପିଣ୍ଡଦାନ କରିବ ବୋଲି କି ନିଶ୍ଚିତତା ଅଛି? ଆମ ପାଇଁ ପୁତ୍ର ଆବଶ୍ୟକ ନାହିଁ; ତେଣୁ ଭଗବାନ ଦେଇ ନାହାନ୍ତି। ପ୍ରାୟ ଦେଖାଯାଉଛି, ଦତ୍ତକ ପୁତ୍ରମାନେ ସେବା କରିବା ବଦଳରେ ଦୁଃଖ ଦେଉଛନ୍ତି। ବରଂ ଅନାଥ

ବାଳକମାନଙ୍କୁ ସାହାଯ୍ୟ ଦେଇ ପଢ଼ାଇବା ଉଚିତ, ସେମାନଙ୍କ ଜୀବନନିର୍ବାହର ବ୍ୟବସ୍ଥା କରିବା ଉଚିତ ।

**ପ୍ରଶ୍ନ**—ପୁତ୍ର ନ ଥିଲେ ବୃଦ୍ଧାବସ୍ଥାରେ କିଏ ସେବା କରିବ?

**ଉତ୍ତର**—ଆଜିକାଲିର ପୁଅମାନେ କଣ ସମସ୍ତେ ମାଆ-ବାପାଙ୍କ ସେବା କରୁଛନ୍ତି? ସେମାନେ କେବଳ ପୈତୃକ ସମ୍ପତ୍ତିକୁ ନିଜ ନାମରେ କରିବାକୁ ଚାହୁଁଛନ୍ତି । ଶ୍ରାଦ୍ଧ-ତର୍ପଣକୁ ମିଛ ବୋଲି କହୁଛନ୍ତି । ମାଆ-ବାପାଙ୍କୁ ଦୁଃଖ ଦେଉଛନ୍ତି । ଏଭଳି ପୁତ୍ର କି ସେବା କରିବେ? ପୁତ୍ର ଥାଆନ୍ତୁ ବା ନ ଥାଆନ୍ତୁ, ପ୍ରାରବ୍ଧରୁ ଯେତିକି ସୁଖ ମିଳିବା କଥା, ସେତିକି ମିଳିବ । ଆମେ ଦେଖୁଛୁ ଯେ ଅନାସକ୍ତ ସାଧୁ-ସନ୍ଥଙ୍କୁ ଯେତିକି ସେବାସତ୍କାର ମିଳୁଛି, ପୁତ୍ରମାନେ ନିଜ ପିତା-ମାତାଙ୍କର ମଧ୍ୟ ସେତିକି ସେବା କରନ୍ତି ନାହିଁ । ପୁତ୍ର ଥିଲେ ଯେ ସେବା ମିଳିବ, ଏକଥା ଠିକ୍ ନୁହେଁ ।

**ପ୍ରଶ୍ନ**—ପୁତ୍ର ନ ଥିଲେ ମୃତ୍ୟୁପରେ କିଏ ପିଣ୍ଡଦାନ କରିବ? ପିଣ୍ଡ ନ ପାଇ ପିତୃପୁରୁଷଙ୍କର କି ପ୍ରକାର ଗତି ହେବ?

**ଉତ୍ତର**—ପିତୃପୁରୁଷ ପିଣ୍ଡ ପାଇ ଜନ୍ମ-ମରଣ-ଚକ୍ରରେ ଘୂରନ୍ତି । ବାଟୋଇକୁ ଭୋକ ଶୋଷ ହେଲେ ସେ ବାଟରେ ଅଟକିଯାଏ ଏବଂ ଖାଇପିଇ ପୁଣି ଆଗକୁ ଚାଲେ । ସେହିପରି ମୃତାତ୍ମାମାନେ ପିଣ୍ଡ ପାଇ ଆଗକୁ ଆଗକୁ ଯାଆନ୍ତି ଅର୍ଥାତ୍ ଜନ୍ମ-ମରଣ-ଚକ୍ରରେ ଘୂରନ୍ତି । ପିଣ୍ଡ ନ ମିଳିଲେ ଗୋଟିଏ ସ୍ଥାନରେ ଅଟକି ଯାଆନ୍ତି । ପିଣ୍ଡଜଳ ପାଇବା ଦ୍ୱାରା ସେମାନଙ୍କର ମୁକ୍ତି ବା ଉଦ୍ଧାର ହୋଇଯାଏ ନାହିଁ ।

ପ୍ରକୃତ ପକ୍ଷରେ ପିତୃପୁରୁଷଙ୍କର ମୁକ୍ତି ହେବା ସନ୍ତାନର ଅଧୀନରେ ନାହିଁ । ତା'ହୋଇଥିଲେ ମୁକ୍ତି ମଧ୍ୟ ପରାଧୀନ ହୁଅନ୍ତା । ମନୁଷ୍ୟ ଜୀବନରେ ସ୍ୱତନ୍ତ୍ରତା ରହନ୍ତା ନାହିଁ । ମୃତ୍ୟୁପରେ ପୁତ୍ରଠାରୁ ପିଣ୍ଡ ପାଇବାର ଆଶା କରିବା କଲ୍ୟାଣକାରକ ନୁହେଁ । ତେଣୁ ଯେଉଁ ବ୍ୟକ୍ତି କଲ୍ୟାଣ ବା ଉଦ୍ଧାର ଚାହାନ୍ତି, ସେ ପୁତ୍ରୈଷଣା (ପୁତ୍ରେଚ୍ଛା), ଲୋକୈଷଣା (ସଂସାରରେ ଯଶ ଓ ମାନ ପାଇବାର ଇଚ୍ଛା) ଓ ବିତ୍ତୈଷଣା (ଧନଲାଭର ଇଚ୍ଛା)—ଏଇ ତିନି ବନ୍ଧନ ତ୍ୟାଗ କରିବେ । ଏଗୁଡ଼ିକ ପ୍ରଭୁପ୍ରାପ୍ତିରେ ବାଧକ ।

ଯେ ସନ୍ତାନଠାରୁ ପିଣ୍ଡ ପାଇବାକୁ ଇଚ୍ଛା କରେ, ସେ ପ୍ରକାରାନ୍ତରେ ଜନ୍ମ-ମରଣ ଇଚ୍ଛା କରେ । କାରଣ ଜନ୍ମ ହେଲେ ହିଁ ତ ପିଣ୍ଡ ମିଳିବ, ନ ହେଲେ କାହାକୁ ମିଳିବ? ପୁତ୍ର ନ ଥିଲେ ଯେ ଉଦ୍ଧାର ହେବ ନାହିଁ, ଏହି ବିଚାର ଭୁଲ୍ । ସନ୍ତାନ ଯୋଗୁଁ ଯଦି ଉଦ୍ଧାର ହୁଅନ୍ତା; ତାହାହେଲେ ଘୁଷୁରି ଏଗାର ଓ ସର୍ପିଣୀ ଏକଶହ ଆଠ ସନ୍ତାନ ଲାଭ କରି ଉଦ୍ଧାର ପାଇଯାଆନ୍ତେ । ବହୁ ସନ୍ତାନ ଥିବା ଲୋକଙ୍କର ଅତି ଶୀଘ୍ର ଉଦ୍ଧାର ହୁଅନ୍ତା । କିନ୍ତୁ ତାହା ତ ଦେଖାଯାଉ ନାହିଁ!

ସନ୍ତାନ ଥାଆନ୍ତୁ ବା ନ ଥାଆନ୍ତୁ, ମନୁଷ୍ୟ ଭଗବାନଙ୍କ ଠାରେ ସବୁବେଳେ ଶ୍ରଦ୍ଧା ଓ ଭକ୍ତି ରଖିବା ଉଚିତ। ପୁତ୍ର-ଲାଲସା ଦୂର ନ ହେଲେ, ମନୁଷ୍ୟ ରାମ ବା କୃଷ୍ଣଙ୍କର ବାଳକ ସ୍ୱରୂପକୁ ପୁତ୍ର ବିଚାରି ଆଦର କରୁ। ସ୍ୱୟଂ ପ୍ରଭୁ ପୁତ୍ରରୂପରେ ତା'ର ଯେପରି ସେବା କରିବେ, ଜନ୍ମିତ ପୁତ୍ର ମଧ୍ୟ ସେପରି ସେବା କରିବ ନାହିଁ। ପ୍ରଭୁ ପୁତ୍ର ହେଲେ ଲୋକ-ପରଲୋକର ସବୁକାର୍ଯ୍ୟ କରିଦେବେ।

**ପ୍ରଶ୍ନ**—ଗୃହସ୍ଥ ଆଶ୍ରମରେ ସନ୍ତାନମାନଙ୍କ ଭରଣପୋଷଣ, ବିବାହ ଆଦି ଉତ୍ସବ ନିମନ୍ତେ ଚିନ୍ତା ରହେ। ସେଥିରୁ କିପରି ରକ୍ଷା ମିଳିବ?

**ଉତ୍ତର**—ପ୍ରତ୍ୟେକ ପ୍ରାଣୀକୁ ତା'ର ପ୍ରାରବ୍ଧ ଅନୁସାରେ ଜନ୍ମ, ଆୟୁ ଓ ଭୋଗ ମିଳିଥାଏ*। ଏହି ତିନୋଟି ମଧ୍ୟରୁ ପ୍ରାଣୀର 'ଜନ୍ମ' ହୋଇ ସାରିଛି। ତା'ର ଯେତିକି 'ଆୟୁ', ସେ ସେତିକି ଦିନ ଜୀବିତ ରହିବ ଓ ପରିସ୍ଥିତି ଅନୁସାରେ ଅନୁକୂଳ ବା ପ୍ରତିକୂଳ 'ଭୋଗ' ପାଇବ। ପ୍ରକୃତ ପକ୍ଷରେ ପରିସ୍ଥିତି କାହାକୁ ସୁଖୀ ବା ଦୁଃଖୀ କରେ ନାହିଁ। ମନୁଷ୍ୟ ନିଜ ଅଜ୍ଞାନରୁ ପରିସ୍ଥିତି ମଧ୍ୟରେ ସୁଖୀ ବା ଦୁଃଖୀ ହୁଏ।

କନ୍ୟା ବଡ଼ ହୋଇଗଲେ ତା'ର ବିବାହ ପାଇଁ ଚିନ୍ତା କରିବା ଉଚିତ ନୁହେଁ, କାରଣ ସେ ନିଜର ପ୍ରାରବ୍ଧ ବା ଭାଗ୍ୟ ନେଇ ଆସିଛି। ସେ ତଦନୁସାରେ ଅନୁକୂଳ ବା ପ୍ରତିକୂଳ ପରିସ୍ଥିତି ନିଶ୍ଚୟ ପାଇବ। କନ୍ୟା ଯେଉଁଠାରେ ସୁଖୀ ରହିବ, ସେଠାରେ ତା'ର ବିବାହ ଦେବା ପାଇଁ ମାତାପିତା ବିଚାର କରନ୍ତୁ। ଏହା ସେମାନଙ୍କର କର୍ତ୍ତବ୍ୟ। ପରନ୍ତୁ ସେମାନଙ୍କ ଇଚ୍ଛା ଅନୁସାରେ କନ୍ୟାକୁ ଭଲ ପରିବାର ଯେ ମିଳିଯିବ, ଏହା ସେମାନଙ୍କ ହାତର କଥା ନୁହେଁ। ସେମାନେ ନିଜ କର୍ତ୍ତବ୍ୟ ପାଳନ କରନ୍ତୁ; କିନ୍ତୁ ଚିନ୍ତିତ ନ ହୁଅନ୍ତୁ। ଚିନ୍ତା ଅଜ୍ଞାନରୁ ଜାତ ହୁଏ ଏବଂ ତାହା ଦ୍ୱାରା ଅନ୍ତଃକରଣ ମଳିନ ହୁଏ। କିନ୍ତୁ ବିଚାର ଦ୍ୱାରା ବୁଦ୍ଧିର ବିକାଶ ଘଟେ। ତେଣୁ ପ୍ରତ୍ୟେକ କର୍ମ ପାଇଁ ଚିନ୍ତା ବଦଳରେ ବିଚାର କରିବା ଉଚିତ। ଚିନ୍ତାରହିତ ହୋଇ ବିଚାର କଲେ ପ୍ରତ୍ୟେକ ସମସ୍ୟାର ସମାଧାନ ନିଶ୍ଚିତ ଭାବରେ ମିଳିଯିବ।

**ପ୍ରଶ୍ନ**—ବୃଦ୍ଧାବସ୍ଥାରେ ପୁତ୍ରମାନେ ସେବା ନ କଲେ କ'ଣ କରିବା ଉଚିତ?

**ଉତ୍ତର**—ପୁତ୍ରମାନଙ୍କ ପ୍ରତି ମମତା ରଖିବା ଆଦୌ ଉଚିତ ନୁହେଁ। ମୋର ପୁତ୍ର ନାହିଁ—ଏଭଳି ବିଚାରିବା ଉଚିତ। କୁଟୁମ୍ବ ଲୋକଙ୍କ ଠାରୁ ସୁଖ ସୁବିଧା ପାଇବାର ଆଶା ରଖି ତାହା ନ ପାଇଲେ ଦୁଃଖ ଲାଗେ—**'ଆଶା ହି ପରମଂ ଦୁଃଖଂ ନୈରାଶ୍ୟଂ ପରମଂ ସୁଖମ୍'**। ତେଣୁ ପୁତ୍ରଙ୍କ ଠାରୁ ସୁଖ ପାଇବା ଆଶା

* ସତି ମୂଳେ ତଦ୍‌ବିପାକୋ ଜାତ୍ୟାୟୁର୍ଭୋଗାଃ। (ଯୋଗଦର୍ଶନ ୨।୧୩)

ଛାଡ଼ିଦେଇ ସମସ୍ତ ଅସୁବିଧାକୁ ତପସ୍ୟା ବୋଲି ଭାବି ଆନନ୍ଦରେ ଗ୍ରହଣ କରିବା ବିଧେୟ । ପରିବାର ଲୋକେ ସେବାଶୁଶ୍ରୂଷା କଲେ ବ୍ୟକ୍ତି ସେମାନଙ୍କ ସହିତ ମୋହ ମମତାରେ ଜଡ଼ିତ ହୋଇଯାଏ । ସେଥିରୁ ବଞ୍ଚିତ ହେବା ଭଗବାନଙ୍କ କୃପାରୁ ତପ ସାଧନା ପାଇଁ ଅପୂର୍ବ ସୁଯୋଗ ବୋଲି ବୁଝିବା ଉଚିତ ।

ମନୁଷ୍ୟ ମୋହ-ମମତାରେ ଲିପ୍ତ ରହିଲେ ତାହାର ଆଧ୍ୟାତ୍ମିକ ଉନ୍ନତିରେ ବାଧା ସୃଷ୍ଟି ହୁଏ । ସେବା ନ କରିବା ଫଳରେ କୁଟୁମ୍ବଜନ ଏହି ବାଧା ଦୂର କରି ତା'ର ଉପକାର କରନ୍ତି ଓ ଉଦ୍ଧାରର ମାର୍ଗ ପ୍ରଶସ୍ତ କରନ୍ତି । ଏହା ସେମାନଙ୍କର କୃପା ବୋଲି ଭାବିବା ଉଚିତ । ଜୀବନ ସାରା ସେବା ଗ୍ରହଣ କଲେ ବୃଦ୍ଧାବସ୍ଥାରେ ସେବା ପାଇବାକୁ ଅଧିକ ଇଚ୍ଛା ହୁଏ । ତେଣୁ ପ୍ରଥମରୁ ବୁଝିବା ଉଚିତ ଯେ ସେ ସୁଖସୁବିଧା ଓ ସେବା ଗ୍ରହଣ କରିବା ପାଇଁ ଜନ୍ମ ପାଇ ନାହିଁ, ବରଂ ସେବା କରିବା ପାଇଁ ଏଠାକୁ ଆସିଛି । ମନୁଷ୍ୟ, ଦେବତା, ଋଷିମୁନି, ଗୁରୁଜନ, ପଶୁପକ୍ଷୀ ପ୍ରଭୃତିଙ୍କର ତଥା ପ୍ରଭୁଙ୍କର ସେବା କରିବା ପାଇଁ ସେ ମନୁଷ୍ୟଦେହ ଲାଭ କରିଛି । ଜୀବନର ପ୍ରାରମ୍ଭିକ କାଳରୁ ସେବାସତ୍କାରର ଆଶା ନ ରଖିଲେ, ବୃଦ୍ଧାବସ୍ଥାରେ ସେସବୁ ନ ପାଇଲେ ସୁଦ୍ଧା ମନରେ ଦୁଃଖ ହୁଏ ନାହିଁ । ଅନ୍ୟପକ୍ଷରେ ସେବା ପାଇବାର ଇଚ୍ଛା ନ ରହିଲେ ଅନ୍ୟମାନେ ସ୍ୱତଃ ଆମ ସେବା ପାଇଁ ଆଗେଇ ଆସନ୍ତି ।

ପ୍ରତ୍ୟେକ କ୍ଷେତ୍ରରେ ତ୍ୟାଗ ଆବଶ୍ୟକ । ତ୍ୟାଗରୁ ତତ୍କାଳ ଶାନ୍ତି ମିଳେ । ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ପ୍ରସନ୍ନ ରହିବା ବହୁତ ବଡ଼ ତପ ଅଟେ । ତପ ଦ୍ୱାରା ଅନ୍ତଃକରଣ ଶୁଦ୍ଧ ହୁଏ । ସୁଖ-ସୁବିଧାରେ ରହିଲେ ଅନ୍ତଃକରଣ ଅଶୁଦ୍ଧ ହୁଏ । ଏଣୁ କାହାଠାରୁ ସୁଖ ନ ଚାହିଁ ନିଜ ମନ, ବାଣୀ ଓ ଶରୀର ଦ୍ୱାରା ଅନ୍ୟକୁ ସୁଖୀ କରିବା ଉଚିତ ।

**ପ୍ରଶ୍ନ**—ପରିବାରରେ କେହି ମରିଗଲେ ମୃତାତ୍ମାଙ୍କ ଶାନ୍ତି ନିମନ୍ତେ ଓ ନିଜର ଶୋକ ଦୂର କରିବା ପାଇଁ କ'ଣ କରିବା ଆବଶ୍ୟକ?

**ଉତ୍ତର**—(୧) ମୃତାତ୍ମା ପାଇଁ ବିଧିପୂର୍ବକ ନାରାୟଣବଳି, ଶ୍ରାଦ୍ଧ-ତର୍ପଣ ଆଦି କରିବା ଉଚିତ । (୨) ଯେତେବେଳେ ସେମାନଙ୍କ କଥା ମନେପଡ଼େ, ସେମାନଙ୍କୁ ଭଗବାନଙ୍କ ଚରଣରେ ଦେଖିବା ଉଚିତ । (୩) ସେମାନଙ୍କ ନିମିତ୍ତ ଗୀତାପାଠ, ଭାଗବତ ସପ୍ତାହ, ରାମଚରିତମାନସର ନବାହ୍ନ ପାରାୟଣ, ନାମଜପ, କୀର୍ତ୍ତନ ଆଦି କରିବା ଉଚିତ । (୪) ସେମାନଙ୍କ ଉଦ୍ଦେଶ୍ୟରେ ଦରିଦ୍ର ବାଳକମାନଙ୍କୁ ମିଷ୍ଟ ପଦାର୍ଥ ବାଣ୍ଟିବା ଉଚିତ । ତାହା ପାଇ ବାଳକମାନେ ପ୍ରସନ୍ନ ହୁଅନ୍ତି । ସେମାନଙ୍କ ପ୍ରସନ୍ନତାରେ ମୃତାତ୍ମାଙ୍କୁ ଶାନ୍ତି ମିଳେ ଏବଂ ନିଜ ମନରେ ମଧ୍ୟ ଆନନ୍ଦ ଆସେ ।

ସେତେବେଳେ ସତ୍ସଙ୍ଗ, କଥାକୀର୍ତ୍ତନ, ମନ୍ଦିର, ତୀର୍ଥ ଆଦି ସ୍ଥଳକୁ ଯିବା ଉଚିତ। ଏଗୁଡ଼ିକ ମଧ୍ୟରୁ ସତ୍ସଙ୍ଗର ମହିମା ସର୍ବାଧିକ। ସତ୍ସଙ୍ଗ କରିବା ଦ୍ୱାରା ସମସ୍ତ ପ୍ରକାର ଶୋକ ଦୂର ହୁଏ।



## (୨) ବ୍ୟବହାର

**ପ୍ରଶ୍ନ**—ପରିବାରର ବୟସ୍କ ଓ ବୃଦ୍ଧ ବ୍ୟକ୍ତିଙ୍କ ପ୍ରତି କିପରି ବ୍ୟବହାର କରିବା ଉଚିତ?

**ଉତ୍ତର**—ଜ୍ୟେଷ୍ଠମାନଙ୍କୁ ସୁଖ-ସୁବିଧା ଦେବା, ସେମାନଙ୍କର ସେବା ଓ ଆଦର କରିବା, ସେମାନଙ୍କ ଆଜ୍ଞାପାଳନ କରିବା ଓ ଅଧୀନରେ ରହିବା କନିଷ୍ଠମାନଙ୍କର କର୍ତ୍ତବ୍ୟ ଅଟେ। କିନ୍ତୁ ଜ୍ୟେଷ୍ଠମାନଙ୍କ ପକ୍ଷେ ନିଜକୁ ବଡ଼ ଓ ପୂଜନୀୟ ଭାବି ଅଭିମାନ କରିବା ଶୋଭନୀୟ ନୁହେଁ। ଏପରି ଆଚରଣ କଲେ ସେମାନଙ୍କ ପ୍ରତି କନିଷ୍ଠମାନଙ୍କ ଆଦର ହ୍ରାସ ପାଏ। ସମସ୍ତଙ୍କୁ ପାଳନପୋଷଣ କରିବାରେ, କଷ୍ଟ ସହନ କରିବାରେ ଓ କନିଷ୍ଠମାନଙ୍କୁ ସୁଖସୁବିଧା ଦେବାରେ ଜ୍ୟେଷ୍ଠମାନେ ଆନନ୍ଦ ଅନୁଭବ କରିବା ଉଚିତ। ଜ୍ୟେଷ୍ଠ ଓ କନିଷ୍ଠ ଉଭୟେ ଏପରି ଆଚରଣ କଲେ ସମ୍ପୂର୍ଣ୍ଣ ପରିବାର ଓ ସମାଜ ସୁଖୀ ହୁଏ।

**ପ୍ରଶ୍ନ**—ବିଧବା ନାରୀ ସହିତ ଶାଶୁ-ଶ୍ୱଶୁର, ମାତାପିତା ପ୍ରଭୃତି କିପରି ବ୍ୟବହାର କରିବେ?

**ଉତ୍ତର**—ବୋହୂ ଅଥବା କନ୍ୟା ବିଧବା ହୋଇଗଲେ ଶାଶୁ-ଶ୍ୱଶୁର, ମାତା-ପିତା ଆଦି ହୃଦୟର ସହିତ ତାକୁ ଆଦର କରିବା ଉଚିତ। ସେ ଯେପରି ପଥଭ୍ରଷ୍ଟ ନ ହୁଏ, ସେଥିପ୍ରତି ସତର୍କ ଓ ଯତ୍ନବାନ୍ ହେବା ଉଚିତ। ତାହାର ହିତ ପାଇଁ ଅର୍ଥାତ୍ ସେ ଯେପରି ଦୁଃଖୀ ନ ହେବ ଓ ସତ୍‌ପଥରେ ରହିବ, ସେଥିପ୍ରତି ଲକ୍ଷ୍ୟ ଦେବା ଉଚିତ।

ମାଆ ଓ ଶାଶୁ ସରଳ ଓ ନିରାଡ଼ମ୍ବର ଜୀବନ ଯାପନ କରିବେ। ଗହଣା, ଲୁଗାପଟା, ଖାଦ୍ୟ ପ୍ରଭୃତିର ବ୍ୟବହାର ସଉକ ଦୃଷ୍ଟିରୁ ନ କରି କେବଳ ନିର୍ବାହ ଦୃଷ୍ଟିରୁ କରିବେ। ଏହା ବିଧବା ବୋହୂ ବା କନ୍ୟା ପାଇଁ ଆଦର୍ଶ ହେବ। ସେମାନେ ତ୍ୟାଗ, ତପ ଓ ସଂଯମରେ ରହିଲେ ତାହାର ପ୍ରଭାବ ଝିଅ ବା ବୋହୂ ଉପରେ ପଡ଼ିବ। ସେମାନେ ବିଚାରିବା ଉଚିତ ଯେ ଏହି ଅବସ୍ଥାରେ ସଂଯମୀ ନ ହେଲେ ଆଉ କେବେ ହେବେ? ସଂସାରରେ ସଂଯମୀ ଓ ତ୍ୟାଗୀମାନଙ୍କର ମହତ୍ତ୍ୱ ରହିଛି। ଭୋଗୀ ଓ ସ୍ୱେଚ୍ଛାଚାରୀମାନଙ୍କର ଯଶ ରହେ ନାହିଁ।

**ପ୍ରଶ୍ନ**—ବିଧବା ସହିତ ଭାଇ-ଭାଉଜ କିପରି ବ୍ୟବହାର କରିବେ?

**ଉତ୍ତର**—ଭାଇ-ଭାଉଜ ବିଧବାକୁ ହୃଦୟର ସହିତ ଆଦର କରିବେ। ତାଙ୍କୁ କେବେହେଲେ ଅବହେଳା କରିବେ ନାହିଁ। ତାର ହିତ ପାଇଁ ଓ ଚରିତ୍ର ରକ୍ଷା ଦୃଷ୍ଟିରୁ ତାକୁ ସ୍ନେହ କରିବା ସଙ୍ଗେ ସଙ୍ଗେ ଅନୁଶାସନ ମଧ୍ୟରେ ରଖିବେ।

**ପ୍ରଶ୍ନ**—ମାତାପିତା କନ୍ୟାଗୃହରେ ଭୋଜନ କରିବା ଉଚିତ କି?

**ଉତ୍ତର**—ମାତାପିତା କନ୍ୟାଦାନ କରିଛନ୍ତି। ଦାନ ଦେଇଥିବା ବସ୍ତୁ ଉପରେ ଦାତାର ଅଧିକାର ନ ଥାଏ। କନ୍ୟା ଏଥର ସେ ଘରର ମାଲିକାଣୀ ହୋଇଗଲା। ତେଣୁ ସେମାନେ କନ୍ୟାଗୃହରେ ଭୋଜନ କରିବା ଉଚିତ ନୁହେଁ। ମୁଁ ଗୋଟିଏ କାହାଣୀ ଶୁଣିଛି। ବରସାନା ଗ୍ରାମର ଜଣେ ଚମାର ସକାଳେ କୌଣସି କାର୍ଯ୍ୟରେ ନନ୍ଦଗ୍ରାମକୁ ଗଲେ। ମଧ୍ୟାହ୍ନ ହୋଇଗଲା। ସେ କିଛି ଖାଇ ନ ଥିଲେ, ତାଙ୍କୁ ଭାରି ଶୋଷ ଲାଗିଲା। କିନ୍ତୁ କନ୍ୟାର ଗ୍ରାମରେ କିପରି ଜଳସ୍ପର୍ଶ କରିବେ? (ବରସାନାରେ ଲୋକେ ରାଧାଙ୍କୁ ନିଜର କନ୍ୟା ବୋଲି ମଣନ୍ତି।) ସେ ଭାବିଲେ ଆମର ବୃଷଭାନୁ ରାଜା ତ ଏହି ଗ୍ରାମରେ କନ୍ୟା ଦେଇଛନ୍ତି। ଏହା ଭାବି ସେ ନନ୍ଦଗ୍ରାମର ଜଳ ପିଇଲେ ନାହିଁ। ନିଜ ଗ୍ରାମ ଆଡ଼କୁ ଫେରିଲେ। ବାଟରେ ଅତ୍ୟଧିକ ତୃଷା ଯୋଗୁଁ ତଳେ ପଡ଼ିଗଲେ। ସେହି ସମୟରେ ରାଧା ସେହି ଚମାରର କନ୍ୟାରୂପ ଧାରଣ କରି ତାଙ୍କ ପାଖକୁ ଆସି କହିଲେ—ବାପା! ତୁମ ପାଇଁ ଜଳ ଆଣିଛି, ପିଅ। ଚମାର କହିଲେ—ଝିଅ! ମୁଁ ଏବେ ମଧ୍ୟ ନନ୍ଦଗ୍ରାମର ସୀମା ମଧ୍ୟରେ ଅଛି। ଏଠାକାର ପାଣି କିପରି ପିଇବି? ରାଧା କହିଲେ—ବାପା! ମୁଁ ଆମ ବରସାନା ଗ୍ରାମର ଜଳ ଆଣିଛି। କନ୍ୟାଠାରୁ ଏହା ଶୁଣି ଚମାର ଜଳପାନ କଲେ ଓ କହିଲେ—ଝିଅ! ତୁ ଯାଆ; ମୁଁ ପରେ ଯିବି। ରାଧା ଚାଲିଗଲେ। ଘରେ ପହଞ୍ଚି ଚମାର ନିଜର ଝିଅକୁ ଆଦରପୂର୍ବକ କହିଲେ—ତୁ ବାଟରେ ପାଣି ପିଆଇ ନ ଥିଲେ ମୋର ପ୍ରାଣ ଛାଡ଼ିଯାଇ ଥାଆନ୍ତା। ଝିଅଟି ଏସବୁ କିଛି ବୁଝି ପାରିଲା ନାହିଁ। ସେ କହିଲା—ବାପା! ମୁଁ ତ ପାଣି ନେଇ ନ ଥିଲି। ତୁମେ କାହା କଥା କହୁଛ? ଚମାର ବୁଝିଗଲେ ଯେ, ସ୍ୱୟଂ ରାଧା ତାଙ୍କର କନ୍ୟାରୂପ ଧାରଣ କରି ମାର୍ଗରେ ପାଣି ପିଆଇ ଥିଲେ। ଏଥିରୁ ଜଣାଯାଉଛି ଯେ ପ୍ରାଚୀନ କାଳରେ ଲୋକେ କନ୍ୟା ଗାଁରୁ ମଧ୍ୟ ଅନ୍ନଜଳ ଗ୍ରହଣ କରୁ ନ ଥିଲେ।

କନ୍ୟାର ସନ୍ତାନ ନ ହେବା ଯାଏ ତା'ଗୃହରେ ଅନ୍ନଜଳ ଗ୍ରହଣ କରିବା ଉଚିତ ନୁହେଁ। ଜାମାତା କେବଳ ପିତୃଋଣରୁ ମୁକ୍ତ ହେବା ପାଇଁ ଅନ୍ୟର କନ୍ୟା ଗ୍ରହଣ କରିଥାନ୍ତି। ସନ୍ତାନ ହେବା ପରେ ଜାମାତା ପିତୃଋଣରୁ ମୁକ୍ତ ହୁଅନ୍ତି। ସେତେବେଳେ କନ୍ୟା ଉପରେ ମାଆ-ବାପାଙ୍କର ଅଧିକାର ଆସେ। ନାତି ଅଜାଆଈଙ୍କ ମୃତ୍ୟୁପରେ

ଶ୍ରାଦ୍ଧ ତର୍ପଣ କରେ । ସେମାନେ ପରଲୋକରେ ତା'ର ପିଣ୍ଡଜଳ ଗ୍ରହଣ କରନ୍ତି । କନ୍ୟାର ପୁଅ ନ ହୋଇ କେବଳ ଝିଅ ହେଲେ ମଧ୍ୟ ତା' ଗୃହରେ ଅନ୍ନଜଳ ଗ୍ରହଣ କରାଯାଇପାରେ । ଏହାର କାରଣ କନ୍ୟାର ସନ୍ତାନ ହେବା ପରେ କନ୍ୟାଦାନ ସଫଳ ହୁଏ ।

**ପ୍ରଶ୍ନ**—ମାତାପିତା ଓ ପୁତ୍ରକନ୍ୟାଙ୍କ ମଧ୍ୟରେ କିଭଳି ସମ୍ପର୍କ ରହିବା ଉଚିତ?

**ଉତ୍ତର**—ମାତାପିତା ବୁଝିବା ଉଚିତ ଯେ ପୁଅଝିଅମାନେ ତାଙ୍କ ଘରେ ଜନ୍ମ ନେଇଥିବାରୁ ପିଲାମାନଙ୍କର ଇହଲୋକ ଓ ପରଲୋକର ମଙ୍ଗଳ ପାଇଁ ଚେଷ୍ଟା କରିବା ତାଙ୍କର କର୍ତ୍ତବ୍ୟ । ନିଜ ସୁଖ-ସୁବିଧାକୁ ଜଳାଞ୍ଜଳି ଦେଇ ଶିକ୍ଷା ଓ ଶାସନ ମାଧ୍ୟମରେ ସନ୍ତାନମାନଙ୍କ ବ୍ୟକ୍ତିତ୍ୱ ନିର୍ମାଣ କରିବାକୁ ହେବ । ଦଣ୍ଡ ଦେଇ ସୁଦ୍ଧା ସେମାନଙ୍କ ଚରିତ୍ରକୁ ସୁଧାରିବାକୁ ହେବ ।

ସନ୍ତାନମାନେ ବିଚାରିବା ଉଚିତ ଯେ ମାତାପିତାଙ୍କ ଯୋଗୁଁ ସେମାନଙ୍କୁ ଅପୂର୍ବ ମନୁଷ୍ୟଦେହ ମିଳିଛି, ଯଦ୍ଦ୍ୱାରା ସେମାନେ ପ୍ରଭୁପ୍ରାପ୍ତି ଓ ପରମାନନ୍ଦପ୍ରାପ୍ତି କରି ପାରିବେ । ତେଣୁ ସେମାନଙ୍କ ଯୋଗୁଁ ପିତାମାତା ଦୁଃଖୀ ଓ ଅପମାନିତ ନ ହୁଅନ୍ତୁ । ସେମାନଙ୍କ ଉତ୍କୃଷ୍ଟ ଆଚରଣ ଯୋଗୁଁ ମାତାପିତାଙ୍କ ସମ୍ମାନ ବଢୁ । ସେମାନଙ୍କ ତୀର୍ଥ-ବ୍ରତ ଆଦି ଶୁଭକର୍ମର ଫଳ ମାତାପିତାଙ୍କୁ ମିଳୁ । ଏପରି ଆଚରଣ ଦ୍ୱାରା ପରିବାର ସୁଖୀ ହୁଏ ଓ ଭବିଷ୍ୟତରେ ସମସ୍ତଙ୍କର କଲ୍ୟାଣ ସାଧିତ ହୁଏ ।

**ପ୍ରଶ୍ନ**—ପତି-ପତ୍ନୀ ପରସ୍ପର କିପରି ବ୍ୟବହାର କରିବେ?

**ଉତ୍ତର**—ପତି ସବୁବେଳେ ବିଚାର କରିବା ଉଚିତ ଯେ ମାତାପିତା, ଭାଇ-ଭଉଣୀଙ୍କୁ ଛାଡ଼ି ବହୁ ତ୍ୟାଗ ସ୍ୱୀକାର କରି ପତ୍ନୀ ମୋ ପାଖକୁ ଆସିଛି । ତାହାର କୌଣସି ପ୍ରକାର ଅସୁବିଧା ହେବା ଉଚିତ ନୁହେଁ । ମୋ ଅପେକ୍ଷା ତାକୁ ଉତ୍ତମ ସୁଖ ସୁବିଧା ମିଳୁ । ତାହାର ପତିବ୍ରତା ଧର୍ମ ସୁରକ୍ଷିତ ରହୁ । ସେ ସ୍ୱେଚ୍ଛାଚାରିଣୀ ନ ହୋଇ ସୁଶୀଳା ହେଉ ଓ ତା'ର ଉଦ୍ଧାର ହେଉ ।

ପତ୍ନୀ ବିଚାରିବା ଉଚିତ ଯେ ସମୁଦ୍ର ପାର କରି ଆସି ମୁଁ ପୁଣି କୂଳରେ ବୁଡ଼ି ନ ଯାଏଁ । ଅର୍ଥାତ୍ ମୁଁ ନିଜ ଗୋତ୍ର, କୁଳ ଓ କୁଟୁମ୍ବ ଛାଡ଼ି ପତିଗୃହକୁ ଆସିଛି, ଅଥଚ ମୋ କାରଣରୁ ପତିକୁଳରେ ଦୁଃଖ, ଅପମାନ, ନିନ୍ଦା ନ ହେଉ । ମୁଁ ସମସ୍ତ ପ୍ରକାର କଷ୍ଟ ସହନ ପାଇଁ ପ୍ରସ୍ତୁତ; କିନ୍ତୁ ସ୍ୱାମୀଙ୍କୁ କିଞ୍ଚିତ୍‌ମାତ୍ର କଷ୍ଟ ନ ହେଉ । ପତିଙ୍କର ଇହଲୋକ ଓ ପରଲୋକରେ ମଙ୍ଗଳ ହେବା ପ୍ରତି ପତ୍ନୀର ଦୃଷ୍ଟି ରହିବା ଉଚିତ ।

**ପ୍ରଶ୍ନ**—ଶାଶୁ-ବୋହୂ ପରସ୍ପର କିପରି ବ୍ୟବହାର କରିବେ?

**ଉତ୍ତର**—ଶାଶୁ ସବୁବେଳେ ବୁଝିବା ଉଚିତ ଯେ ବୋହୂ ନିଜର ମାଆକୁ ଛାଡ଼ି ଏଠାକୁ ଆସିଛି । ସେ ମୋ ପୁତ୍ରର ଅଙ୍ଗ ସଦୃଶ । ମୋର ନିକୃଷ୍ଟ ବ୍ୟବହାର କାରଣରୁ ସେ କେବେହେଲେ ଦୁଃଖୀ ହୋଇ ତା ମାଆକୁ ସ୍ମରଣ ନ କରୁ ।

ବୋହୂ ବୁଝିବା ଉଚିତ ଯେ, ଶାଶୁ ମୋର ସମଗ୍ର ସୌଭାଗ୍ୟର ବା ପତିଦେବଙ୍କର ଜନନୀ । ଯେ ମୋର ସର୍ବସ୍ୱ, ସେ ଏହାଙ୍କ ଠାରୁ ଜନ୍ମ ନେଇଛନ୍ତି । ତେଣୁ ଶାଶୁଙ୍କର ଆଦର ଓ ପ୍ରତିଷ୍ଠା ରହିବା ଉଚିତ । ମୁଁ କଷ୍ଟ ଭୋଗିବି ପଛେ, କିନ୍ତୁ ସେ ସୁଖ ପାଆନ୍ତୁ । ତାଙ୍କର କଠୋର ଶବ୍ଦ ମଧ୍ୟ ମୋ ପାଇଁ ହିତକାରକ । ମୁଁ ରୋଗରେ ପଡ଼ିଲେ, ସେ ମୋର ବହୁତ ସେବା କରନ୍ତି । ସେ ମୋ ଉପରେ ନିଜ ଘରର ଦାୟିତ୍ୱ ଓ ଉତ୍ତରାଧିକାର ଛାଡ଼ି ଦେଇଛନ୍ତି । ଏ ଋଣ ମୁଁ ଜନ୍ମଜନ୍ମାନ୍ତରରେ ଶୁଝି ପାରିବି ନାହିଁ । ବୋହୂ ନିଜର ଦେଢ଼ଶୁର, ଦିଅର ଓ ଯା'ମାନଙ୍କୁ ଆଦର ସମ୍ମାନ କରିବା ଉଚିତ । ଦେଢ଼ଶୁର ଓ ବଡ଼ ଯା' ତାର ପିତାମାତା ପରି ପୂଜ୍ୟ । ଦିଅର ଓ ସାନ ଯା' ପୁଅ ଝିଅଙ୍କ ପରି ଆଦରଣୀୟ । ସେ ଭାବିବା ଉଚିତ, ଏ ସମସ୍ତଙ୍କର ସେବା ପାଇଁ ମୁଁ ଏ ଘରକୁ ଆସିଛି । ମୋର ସମସ୍ତ କର୍ମ ଏମାନଙ୍କର ସୁଖ ପାଇଁ ଉଦ୍ଦିଷ୍ଟ ହେଉ । ଏମାନେ ମୋ ସହିତ କିପରି ବ୍ୟବହାର କରୁଛନ୍ତି, ତାହା ଦେଖିବା ମୋର କର୍ତ୍ତବ୍ୟ ନୁହେଁ; କାରଣ ଏମାନଙ୍କର କଠୋର ବଚନରେ ମଧ୍ୟ ମୋର ହିତ ନିହିତ ।

**ପ୍ରଶ୍ନ**—ଭାଉଜ ଓ ଦିଅର ମଧ୍ୟରେ କିପରି ବ୍ୟବହାର ହେବା ଉଚିତ?

**ଉତ୍ତର**—ଭାଉଜ ସୀତାଙ୍କ ପରି ଓ ଦିଅର ଭରତଙ୍କ ପରି ବ୍ୟବହାର କରିବେ । ସୀତା ଭରତଙ୍କୁ ପୁତ୍ରପ୍ରାୟ ମଣୁଥିଲେ । କୈକେୟୀ ବିନା କାରଣରେ ରାମଙ୍କୁ ବଣକୁ ପଠାଇଦେଲେ । ଏହା ସତ୍ତ୍ୱେ ସୀତା ଭରତଙ୍କୁ କେବେହେଲେ ଦୋଷାରୋପ ଓ ଅନାଦର କରି ନ ଥିଲେ । ବରଂ ଭରତ ଚିତ୍ରକୂଟରେ ପହଞ୍ଚି ସୀତାଙ୍କ ପାଦଧୂଳି ନେବାବେଳେ ସେ ତାଙ୍କୁ ଆଶୀର୍ବାଦ ଦେଇଥିଲେ । ତେଣୁ ଦିଅର ଅପମାନ କଲେ ସୁଦ୍ଧା ଭାଉଜ ତାଙ୍କୁ ମାତୃସ୍ନେହ ଦେବା ଉଚିତ । ଅନ୍ୟପକ୍ଷରେ ଦିଅର ଭାଉଜଙ୍କୁ ମାଆ ପରି ସମ୍ମାନ ଦେବା ଉଚିତ । ସୀତା ବୟସରେ ସେତେ ବଡ଼ ନ ଥିଲେ ସୁଦ୍ଧା ଭରତ, ଲକ୍ଷ୍ମଣ ପ୍ରଭୃତି ତାହାଙ୍କୁ ମାତୃତୁଲ୍ୟ ଦେଖୁଥିଲେ ।

**ପ୍ରଶ୍ନ**—ଶଳା-ଭିଣୋଇ ମଧ୍ୟରେ କିପରି ବ୍ୟବହାର ରହିବା ଉଚିତ?

**ଉତ୍ତର**—ଭିଣୋଇ ଭାବିବା ଉଚିତ ଯେ ନିଜ ପତ୍ନୀ ପରି ଶାଳକ ମଧ୍ୟ ପ୍ରିୟପାତ୍ର । ଲୌକିକ ଦୃଷ୍ଟିରୁ ବିଗ୍ୱର କଲେ ଶାଳକଙ୍କ ଘରୁ ସମୟେ ସମୟେ କିଛି

ନା କିଛି ଜିନିଷ ମିଳିଥାଏ। ସେଥିରୁ ଉପକାର ମିଳେ। ପାରମାର୍ଥିକ ଦୃଷ୍ଟିରୁ ପତ୍ନୀ ଶ୍ୟାଳକଙ୍କ ଘରୁ ଆସିଥିବାରୁ ତାଙ୍କ ପ୍ରତି ଆଦର ପ୍ରଦର୍ଶନ କରିବା ଉଚିତ।

ଶାଳକ ବୁଝିବା ଉଚିତ, ଭିଣୋଇ ମୋ ଭଉଣୀଙ୍କ ଆଦରଣୀୟ ଓ ପୂଜ୍ୟ। ତେଣୁ ମୋ ପାଇଁ ମଧ୍ୟ ଏ ଆଦରଣୀୟ। ଭଉଣୀ ଓ ଝିଅକୁ ସବୁବେଳେ କିଛି ନା କିଛି ଦେବା କର୍ତ୍ତବ୍ୟ ଅଟେ। ତେଣୁ ଭଉଣୀର ଅଙ୍ଗ ହୋଇଥିବାରୁ ଭିଣୋଇ ମଧ୍ୟ ଦାନ ଓ ସ୍ନେହର ପାତ୍ର।

**ପ୍ରଶ୍ନ**—ଭାଇ-ଭଉଣୀ ପରସ୍ପର କିପରି ବ୍ୟବହାର କରିବେ?

**ଉତ୍ତର**—ପ୍ରାୟ ଦେଖାଯାଏ ଯେ ଭାଇ ପକ୍ଷରୁ ତ୍ରୁଟି ହୁଏ। ଭଉଣୀ ପକ୍ଷରୁ ସବୁବେଳେ ଭାଇ ପ୍ରତି ସ୍ନେହ ରହିଥାଏ। ଭାଇ ବୁଝିବା ଉଚିତ ଯେ ଭଉଣୀ ଦୟାର ମୂର୍ତ୍ତି। ଭଉଣୀକୁ ସ୍ନେହ ଓ ଆଦର ଦେବା ଉଚିତ। ବ୍ରାହ୍ମଣକୁ ଭୋଜନ ଦେଲେ ଯେଉଁ ପୁଣ୍ୟ ମିଳେ, ଭଉଣୀ ଓ କନ୍ୟାକୁ କିଛି ଉପହାର ଦେଲେ ସେହିଭଳି ପୁଣ୍ୟ ଲାଭ ହୁଏ।

ସରକାର ପିତାଙ୍କ ସମ୍ପତ୍ତିରେ କନ୍ୟାର ଅଧିକାରକୁ ସ୍ୱୀକାର କରିଛନ୍ତି। ଏହା ଫଳରେ ଭାଇ-ଭଉଣୀଙ୍କ ମଧ୍ୟରେ ମନାନ୍ତର ଘଟୁଛି। ଭଉଣୀ ଭାଇକୁ ସମ୍ପତ୍ତିର ଭାଗ ମାଗିଲେ ପରସ୍ପର ମଧ୍ୟରେ ସ୍ନେହ-ସୌହାର୍ଦ୍ଦ୍ୟ ରହେ ନାହିଁ। ଏଣୁ ଆମର ପାରମ୍ପରିକ ପବିତ୍ର ରୀତିକୁ ସମ୍ମାନ ଦେବା ଉଚିତ ଅର୍ଥାତ୍ ପିତାଙ୍କ ସମ୍ପତ୍ତିରୁ ଭାଗ ନେବା ପାଇଁ କହିବା କନ୍ୟା ପକ୍ଷରେ ଶୋଭନୀୟ ନୁହେଁ। ଧନ ସେପରି କିଛି ବଡ଼ ଜିନିଷ ନୁହେଁ। ତାହା କେବଳ ବ୍ୟବହାରରେ କାମରେ ଲାଗିଥାଏ। ଧନକୁ ମହତ୍ତ୍ୱ ଦେବା ଅପେକ୍ଷା ସ୍ନେହ ଓ ଆଦରକୁ ବଡ଼ ବୋଲି ମଣିବା ଉଚିତ। ଧନ ମନାନ୍ତର ସୃଷ୍ଟି କରେ ଓ ପରିଣାମରେ ନରକରେ ପକାଏ। ଏହାଦ୍ୱାରା ମନୁଷ୍ୟତା ରହେ ନାହିଁ। କୁକୁରମାନେ ରୁଟି ନ ମିଳିବା ପର୍ଯ୍ୟନ୍ତ ଖୁସିରେ ଖେଳୁଥାନ୍ତି; ଆଗରେ କେହି ରୁଟି ଖଣ୍ଡିଏ ପକାଇଦେଲେ ସେମାନଙ୍କର କଳହ ଆରମ୍ଭ ହୋଇଯାଏ। ମନୁଷ୍ୟଙ୍କର ମଧ୍ୟ ସେହିପରି ଆଚରଣ ହେଲେ ମନୁଷ୍ୟତାର କେଉଁ ମହତ୍ତ୍ୱ ରହିବ?

ଧର୍ମ, କର୍ତ୍ତବ୍ୟ, ଋଷିବାକ୍ୟ, ପ୍ରଭୁଙ୍କ ଆଦେଶ ଓ ତ୍ୟାଗ—ଏସବୁକୁ ମହତ୍ତ୍ୱ ଦେଲେ ଲୋକ ଓ ପରଲୋକରେ ମଙ୍ଗଳ ହୁଏ। ପରନ୍ତୁ ଅଭିମାନ, ସ୍ୱାର୍ଥ ଆଦିକୁ ମହତ୍ତ୍ୱ ଦେଲେ ଲୋକ ଓ ପରଲୋକ ନଷ୍ଟ ହୁଏ।

**ପ୍ରଶ୍ନ**—ଗୃହସ୍ଥ ବ୍ୟକ୍ତି ଅତିଥିଙ୍କ ସହିତ କିପରି ବ୍ୟବହାର କରିବ?

**ଉତ୍ତର**—ଯାହାଙ୍କ ଆସିବାର ତିଥି ବା ନିଶ୍ଚିତ ସମୟ ନାହିଁ, ସେ ଅତିଥି।

ଅତିଥିସେବା ମୁଖ୍ୟତଃ ଗୃହସ୍ଥ ଆଶ୍ରମରେ ହୋଇଥାଏ । ବାନପ୍ରସ୍ଥ ଆଶ୍ରମ ପାଇଁ ମଧ୍ୟ ଏହାର ବିଧାନ ଅଛି । ବ୍ରହ୍ମଚାରୀ ଓ ସନ୍ନ୍ୟାସୀଙ୍କ ପକ୍ଷେ ଅତିଥିସେବା କରିବା ମୁଖ୍ୟ ନୁହେଁ ।

ଯେତେବେଳେ ବ୍ରହ୍ମଚାରୀ ସ୍ନାତକ ହୁଏ ଅର୍ଥାତ୍ ବ୍ରହ୍ମଚର୍ଯ୍ୟ ନିୟମ ପାଳନ କରିସାରି ଗୃହସ୍ଥାଶ୍ରମରେ ପ୍ରବେଶ ପାଇଁ ପ୍ରସ୍ତୁତ ହୁଏ, ସେତେବେଳେ ତାକୁ ଦୀକ୍ଷାନ୍ତ ଉପଦେଶ ଦିଆଯାଏ—'**ମାତୃଦେବୋ ଭବ । ପିତୃଦେବୋ ଭବ । ଆଚାର୍ଯ୍ୟଦେବୋ ଭବ । ଅତିଥିଦେବୋ ଭବ ।**' (ତୈତ୍ତିରୀୟୋପନିଷଦ୍, ଶିକ୍ଷା. ୧୧ । ୨) ଅର୍ଥାତ୍ ମାତା, ପିତା, ଆଚାର୍ଯ୍ୟ ଓ ଅତିଥିଙ୍କୁ ଦେବତା ମନେକରି ସେମାନଙ୍କ ସେବା କର । ମୁଖ୍ୟତଃ ଗୃହସ୍ଥାଶ୍ରମୀ ପକ୍ଷେ ଏହି ନିୟମଗୁଡ଼ିକ ପାଳନୀୟ । ଅତିଥିକୁ ଯଥାଯୋଗ୍ୟ ଆଦର ଓ ସତ୍କାର କରିବା ଆବଶ୍ୟକ । ଅତିଥିସେବା ମଧ୍ୟରେ ଆସନ ଦେବା, ଭୋଜନ ଦେବା, ଜଳ ଦେବା ପ୍ରଭୃତି ଅନେକ ପ୍ରକାର ସେବା ଅନ୍ତର୍ଗତ; ମାତ୍ର ଅନ୍ନଦାନ ସବୁଠୁ ମୁଖ୍ୟ । ଭୋଜନ ପ୍ରସ୍ତୁତ ହେବା ପରେ ବିଧିପୂର୍ବକ ବଳିବୈଶ୍ୱଦେବ କରିବେ । ସମଗ୍ର ବିଶ୍ୱକୁ ଭୋଜନ ଅର୍ପଣ କରିବା ଏହାର ଉଦ୍ଦେଶ୍ୟ । ତା'ପରେ ଭଗବାନଙ୍କୁ ନୈବେଦ୍ୟ କରିବେ; ଏବଂ ତା'ପରେ ଅତିଥି, ଭିକ୍ଷୁକ ଆଦିଙ୍କୁ ଭୋଜନ ଦେବେ । ଭିକ୍ଷୁକ ଛଅ ପ୍ରକାର—

**ବ୍ରହ୍ମଚାରୀ ଯତିଶ୍ଚୈବ ବିଦ୍ୟାର୍ଥୀ ଗୁରୁପୋଷକଃ ।**
**ଅଧ୍ୱଗଃ କ୍ଷୀଣବୃତ୍ତିଶ୍ଚ ଷଡେତେ ଭିକ୍ଷୁକାଃ ସ୍ମୃତାଃ ॥**

ଅର୍ଥାତ୍ ବ୍ରହ୍ମଚାରୀ, ସାଧୁ-ସନ୍ଥ, ବିଦ୍ୟାର୍ଥୀ, ଗୁରୁସେବକ, ପଥଚାରୀ ଏବଂ କ୍ଷୀଣବୃତ୍ତି ଲୋକେ (ଚୋର ଓ ଡକାୟତଙ୍କ ଦ୍ୱାରା ଅଥବା ଘରପୋଡ଼ି ଆଦିରେ ସର୍ବସ୍ୱାନ୍ତ ବ୍ୟକ୍ତି)—ଏମାନେ ଭିକ୍ଷୁକ ଅଟନ୍ତି । ଏମାନଙ୍କୁ ଅନ୍ନଦାନ କରିବା ଉଚିତ ।

ଯଦି ବଳିବୈଶ୍ୱଦେବ କରିବା ପୂର୍ବରୁ ଅତିଥି ବା ଭିକ୍ଷୁକ ପହଞ୍ଚିଯାଆନ୍ତି, ତେବେ ସମୟ ଥିଲେ ବଳିବୈଶ୍ୱଦେବ କରିବ, ନଚେତ୍ ଭିକ୍ଷୁକକୁ ଭୋଜନ ଦେବ । ବ୍ରହ୍ମଚାରୀ ଓ ସନ୍ନ୍ୟାସୀ ପ୍ରସ୍ତୁତ ଅନ୍ନରେ ଭାଗୀଦାର । ସେମାନଙ୍କୁ ଭୋଜନ ନ ଦେଇ ନିଜେ ଖାଇବା ଦ୍ୱାରା ପାପ ଅର୍ଜିତ ହୁଏ । ଏହାର ପ୍ରାୟଶ୍ଚିତ୍ତ ପାଇଁ ଚାନ୍ଦ୍ରାୟଣବ୍ରତ କରିବାକୁ ପଡ଼େ* । ଅତିଥି ଘରକୁ ଆସି ଖାଲି ହାତରେ ଫେରିଗଲେ, ଗୃହସ୍ୱାମୀର

* ଚାନ୍ଦ୍ରାୟଣବ୍ରତର ବିଧି ଏହିପରି—ଅମାବାସ୍ୟାର ପର ପ୍ରତିପଦାକୁ ଗୋଟିଏ ଗ୍ରାସ, ଦ୍ୱିତୀୟାକୁ ଦୁଇ ଗ୍ରାସ—ଏହି କ୍ରମରେ ଗୋଟିଏ ଲେଖାଏଁ ଗ୍ରାସ ବଢ଼ାଇ ବଢ଼ାଇ ପୂର୍ଣ୍ଣିମାକୁ ପନ୍ଦର ଗ୍ରାସ ଅନ୍ନ ଗ୍ରହଣ କରିବ । ପୁନଶ୍ଚ ପୂର୍ଣ୍ଣିମା ପର ପ୍ରତିପଦାଠାରୁ ଗୋଟିଏ ଲେଖାଏଁ ଗ୍ରାସ କମ୍ କରି କରି ଆସିବ ଅର୍ଥାତ୍ ପ୍ରତିପଦାକୁ ଚଉଦ ଗ୍ରାସ, ଦ୍ୱିତୀୟାକୁ ତେର ଗ୍ରାସ

ପୁଣ୍ୟ ନେଇଯାଏ ଓ ନିଜ ପାପ ଛାଡ଼ି ଦେଇଯାଏ । ତେଣୁ ଅତିଥିଙ୍କୁ ଭୋଜନ ଦେବା ଅତ୍ୟନ୍ତ ଆବଶ୍ୟକ ।

ଅତିଥିଙ୍କୁ ହୃଦୟରେ ପରମାତ୍ମାଙ୍କ ସ୍ୱରୂପ ବୋଲି ଭାବି ସେବାସତ୍କାର କରିବା ଉଚିତ । ପରନ୍ତୁ ଆଜିକାଲି ଅତିଥି ବେଶରେ ଅନେକ ଦୁଷ୍ଟ ଲୋକ ମଧ୍ୟ ବୁଲୁଛନ୍ତି । ତେଣୁ ଗୃହର ଭେଦ ନ ଦେଖାଇବାକୁ ସାବଧାନ ରହିବା ଉଚିତ ।

**ପ୍ରଶ୍ନ**—କୁହାଯାଇଛି ଯେ ପ୍ରଥମେ ସନ୍ନ୍ୟାସୀ ଆଦିଙ୍କୁ ଭୋଜନ ଦେବା ଗୃହସ୍ଥର କର୍ତ୍ତବ୍ୟ । ପୁଣି ସନ୍ନ୍ୟାସୀଙ୍କ ଧର୍ମ ହେଉଛି ଗୃହସ୍ଥର ଭୋଜନ ସରିବା ପରେ ଭିକ୍ଷା ପାଇଁ ଯିବା । ଏ ଉଭୟ କାର୍ଯ୍ୟ କିପରି ହେବ?

**ଉତ୍ତର**—ଭୋଜନ ପ୍ରସ୍ତୁତି ପରେ ଗୃହସ୍ଥ ବଳିବୈଶ୍ୱଦେବ କରିବେ । ଅତିଥି ଆସିଲେ ତାଙ୍କୁ ଯଥାଶକ୍ତି ଭୋଜନ ଦେବେ । କେହି ଅତିଥି ନ ଆସିଲେ ଗୋଟିଏ ଗାଈକୁ ଦୁହିଁବା ପାଇଁ ଯେତିକି ସମୟ ଆବଶ୍ୟକ, ସେତିକି ସମୟ ପିଣ୍ଡାରେ ଠିଆ ହୋଇ ଅତିଥିଙ୍କୁ ପ୍ରତୀକ୍ଷା କରିବେ । ଅତିଥି ନ ଆସିଲେ ତାଙ୍କ ଭାଗ ପୃଥକ୍ ରଖି ଭୋଜନ କରିବେ ।

ସନ୍ନ୍ୟାସୀ କୌଣସି ପଦାର୍ଥ ସଂଗ୍ରହ କରି ରଖନ୍ତି ନାହିଁ । କ୍ଷୁଧା ହେଲେ ସେ ଭିକ୍ଷା ପାଇଁ ଗୃହସ୍ଥ ନିକଟକୁ ଆସନ୍ତି । ଗୃହସ୍ଥ ଭୋଜନ ପରେ ବାସନକୁସନ ମାଜି ରଖିବା ପରେ ସନ୍ନ୍ୟାସୀ ଭିକ୍ଷା ପାଇଁ ସେ ଗୃହକୁ ଆସିବେ । ଉଦ୍ଦେଶ୍ୟ ହେଲା, ଗୃହସ୍ଥ ଉପରେ ଭାର ନ ପଡୁ ଏବଂ ଖାଦ୍ୟ ନିଅଣ୍ଟ ନ ହେଉ । ପାଞ୍ଚ ସାତ ଜଣଙ୍କ ପାଇଁ ରୋଷେଇ ହୋଇଥିଲେ ଜଣେ ଅତିଥି ପାଇଁ ଖାଦ୍ୟ ନିଅଣ୍ଟ ହେବ ନାହିଁ । ଗୃହସ୍ଥର ଭୋଜନ ପରେ ଯାହା ଅବଶିଷ୍ଟ ଥିବ, ତାହା ସେ ଗ୍ରହଣ କରିବେ । ଭିକ୍ଷା ପାଇଁ ବେଶୀ ସମୟ ଅପେକ୍ଷା କରିବେ ନାହିଁ । ସେ ଆସିବା ପରେ ଗୃହସ୍ଥ ଭିକ୍ଷାଦାନ ପାଇଁ ମନା ନ କରିବା ପର୍ଯ୍ୟନ୍ତ ଗୋଟିଏ ଗାଈ ଦୁହିଁବାରେ ଯେତିକି ସମୟ ଲାଗେ ମାତ୍ର ସେତିକି ସମୟ ସେ ଘରେ ଅପେକ୍ଷା କରିବେ । ଗୃହସ୍ଥର ଦେବାର ଭାବନା ନ ଥିଲେ ଆଦୌ କ୍ରୋଧିତ ନ ହୋଇ ସେଠାରୁ ଚାଲିଯିବେ । ଗୃହସ୍ଥ ମଧ୍ୟ କସ୍ମିନ୍‌କାଳେ ସନ୍ନ୍ୟାସୀ ପ୍ରତି କ୍ରୋଧ କରିବେ ନାହିଁ ।

**ପ୍ରଶ୍ନ**—ଗୃହସ୍ଥ ନିଜର ପଡ଼ୋଶୀମାନଙ୍କ ସହିତ କି ପ୍ରକାର ବ୍ୟବହାର କରିବ?

---

ଇତ୍ୟାଦି । ଚନ୍ଦ୍ରଙ୍କ କଳା ବଢ଼ିବା କ୍ରମରେ ଗ୍ରାସ ବଢ଼ାଇବାକୁ ହେବ ଏବଂ କଳା କମିବା କ୍ରମରେ ଗ୍ରାସ କମ୍ କରିବାକୁ ହେବ । ଏହାକୁ 'ଚାନ୍ଦ୍ରାୟଣବ୍ରତ' କହନ୍ତି । ଏହି ଗ୍ରାସ ବ୍ୟତୀତ ଆଉ କିଛି ଖାଇବ ନାହିଁ ।

**ଉତ୍ତର**—ପଡ଼ୋଶୀମାନଙ୍କୁ ନିଜ କୁଟୁମ୍ବର ଲୋକ ଭଳି ଭାବିବା ଉଚିତ। ତୁଚ୍ଛ ଲୋକେ ନିଜ-ପର ଭେଦଭାବନା ରଖନ୍ତି। ଉଦାର ଲୋକେ ସଂପୂର୍ଣ୍ଣ ପୃଥିବୀବାସୀଙ୍କୁ ନିଜର କୁଟୁମ୍ବ ମଣନ୍ତି*। ଆମେ ସମସ୍ତେ ପ୍ରଭୁଙ୍କ ସନ୍ତାନ ହୋଇଥିବାରୁ ଭାଇ ଭାଇ ଅଟୁ। ତେଣୁ ଘରଲୋକଙ୍କ ଭଳି ସମସ୍ତଙ୍କ ସହିତ ଉତ୍ତମ ବ୍ୟବହାର କରିବା ଉଚିତ। ଘରକୁ ଫଳ ବା ମିଷ୍ଟ ପଦାର୍ଥ ଆସିଲେ ଓ ପାଖରେ ନିଜର ଓ ପଡ଼ୋଶୀଙ୍କ ପୁଅ-ଝିଅ ଥିଲେ, ପ୍ରଥମେ ପଡ଼ୋଶୀଙ୍କ ପିଲାମାନଙ୍କୁ ଭଲ ଭଲ ଜିନିଷ ବାଣ୍ଟିବେ। ପରେ ଭଉଣୀ ଓ ଝିଅଙ୍କର ପିଲାମାନଙ୍କୁ ଦେବେ। ତା'ପରେ ନିଜ ଘରର ପୁତୁରା ଝିଆରୀଙ୍କୁ ଦେବେ। ଶେଷରେ ନିଜ ପିଲାଙ୍କୁ ଦେବେ। ଆମେ ଏପରି ବ୍ୟବହାର କଲେ, ଅନ୍ୟମାନେ ମଧ୍ୟ ଆମ ପିଲାମାନଙ୍କ ପ୍ରତି ସେହିପରି ବ୍ୟବହାର କରିବେ। ଫଳରେ ସମାଜ ମଧ୍ୟରେ ପ୍ରୀତି ବୃଦ୍ଧି ପାଇବ। ଜିନିଷପତ୍ର ଠାରୁ ପ୍ରୀତି ଅଧିକ ମୂଲ୍ୟବାନ୍।

ପଡ଼ୋଶୀର ଗାଈଗୋରୁ ନିଜ ବାଡ଼ିକୁ ପଶିଆସିଲେ କଳିତକରାଳ କରିବେ ନାହିଁ। ପଶୁମାନଙ୍କୁ ମାରିବେ ନାହିଁ। ପ୍ରେମପୂର୍ବକ ପଡ଼ୋଶୀଙ୍କୁ କହିବେ—ଭାଇ! ଏଣିକି ଗାଈଗୋରୁ ନ ଆସିବା ପାଇଁ ଧ୍ୟାନ ଦେବ। ଏପରି ବ୍ୟବହାର କଲେ, ପଡ଼ୋଶୀଙ୍କ ବାଡ଼ିରେ ଆମ ଗାଈଗୋରୁ ପଶିଗଲେ ସେମାନେ ମଧ୍ୟ ଭଦ୍ର ବ୍ୟବହାର କରିବେ। ପଡ଼ୋଶୀ ବିରକ୍ତ ହେଲେ ସୁଦ୍ଧା ନିଜେ କ୍ରୋଧିତ ହେବେ ନାହିଁ। ନିଜ ଗାଈଗୋରୁ ପଡ଼ୋଶୀ ବାଡ଼ିରେ ଯେପରି ନ ପଶନ୍ତି, ସେଥିପ୍ରତି ସାବଧାନ ରହିବେ।

ଘରେ ଉତ୍ସବ ଆଦି ହେଲେ ପଡ଼ୋଶୀଙ୍କ ପିଲାମାନଙ୍କୁ ଭଲ ଭଲ ମିଠାଇ ବାଣ୍ଟିବେ। ନିଜ ଭଉଣୀ ବା ଝିଅର ବିବାହରେ ଆମେ ଯେପରି ବଦାନ୍ୟ ହେଉ, ପଡ଼ୋଶୀର ଭଉଣୀ ବା ଝିଅର ବିବାହ ସମୟରେ ସେହିପରି ସହାନୁଭୂତି ଓ ସହଯୋଗ ପ୍ରଦାନ କରିବେ। ସେମାନଙ୍କ ଜାମାତାମାନଙ୍କ ସଙ୍ଗେ ମଧୁର ବ୍ୟବହାର କରିବେ।

**ପ୍ରଶ୍ନ**—ଭୃତ୍ୟ ସହିତ କିପରି ବ୍ୟବହାର କରିବା ଉଚିତ?

**ଉତ୍ତର**—ଭୃତ୍ୟ ସହ ନିଜ ପୁତ୍ର ପରି ବ୍ୟବହାର କରିବେ। ଭୃତ୍ୟ ଦୁଇ ପ୍ରକାର ଥାଆନ୍ତି—(୧) କେତେକ ଦରମା ନିଅନ୍ତି ଓ ଭୋଜନ ମଧ୍ୟ କରନ୍ତି। (୨) କେତେକ କେବଳ ଦରମା ନିଅନ୍ତି ଓ ନିଜ ଘରେ ଭୋଜନ କରନ୍ତି। ଯେଉଁମାନେ ମୁନିବ ଘରେ ଭୋଜନ କରନ୍ତି, ସେମାନଙ୍କୁ ନିକୃଷ୍ଟ ଭୋଜନ ଦେବା

* ଅୟଂ ନିଜଃ ପରୋ ବେତ୍ତି ଗଣନା ଲଘୁଚେତସାମ୍।
ଉଦାରଚରିତାନାଂ ତୁ ବସୁଧୈବ କୁଟୁମ୍ବକମ୍॥ (ପଞ୍ଚତନ୍ତ୍ର, ଅପରୀକ୍ଷିତ. ୩୭)

ଅନୁଚିତ । ଦେଖାଯାଏ ଯେ ଗୃହିଣୀ ନିଜ ପତି ଓ ପୁତ୍ରଙ୍କୁ ଉତ୍କୃଷ୍ଟ ଭୋଜନ, ଗୃହର ଅନ୍ୟ ସଦସ୍ୟମାନଙ୍କୁ ମଧ୍ୟମ ଧରଣର ଭୋଜନ ଓ ଭୃତ୍ୟମାନଙ୍କୁ ନିକୃଷ୍ଟ ଭୋଜନ ଦିଅନ୍ତି । ଏହା ଅନୁଚିତ । ସମସ୍ତଙ୍କ ପାଇଁ ମଧ୍ୟମ ଧରଣର ଖାଦ୍ୟ ପ୍ରସ୍ତୁତ କରି ପରିବେଷଣ କରିବା ଉଚିତ । ଭିକ୍ଷୁକମାନଙ୍କୁ ମଧ୍ୟ ସେଭଳି ଖାଦ୍ୟ ଦେବା ବିଧେୟ ।

ଯେଉଁ ଭୃତ୍ୟମାନେ କେବଳ ଦରମା ନିଅନ୍ତି, ଭୋଜନ କରନ୍ତି ନାହିଁ, ସେମାନଙ୍କ ପିଲାମାନଙ୍କ ପାଇଁ ବେଳେ ବେଳେ ମିଠାଇ, ଲୁଗାପଟା ଆଦି ଦେବା ଉଚିତ । ଦରମା ଛଡ଼ା ବେଳେ ବେଳେ ପୁରସ୍କାର, ଖାଦ୍ୟପଦାର୍ଥ ପ୍ରଭୃତି ଦେବା ଉଚିତ । ଅଧିକ ଦରମା ଅପେକ୍ଷା ସାମୟିକ ଭାବରେ ପୁରସ୍କାର ଦେବା ଅଧିକ ପ୍ରଭାବ ପକାଏ । ତଦ୍ଦ୍ୱାରା ଗୃହସ୍ୱାମୀଙ୍କ ଉଦାରତା ବୃଦ୍ଧିପାଏ । ସେବକମାନେ ସନ୍ତୁଷ୍ଟ ଓ ବିଶ୍ୱସ୍ତ ହୁଅନ୍ତି, ଚୋର-ଡକାୟତଙ୍କ କବଳରୁ ଗୃହସ୍ଥଙ୍କୁ ରକ୍ଷା କରନ୍ତି ଏବଂ ଗୃହର ଉତ୍ସବମାନଙ୍କରେ ଉତ୍ସାହପୂର୍ବକ ପରିଶ୍ରମ କରନ୍ତି ।

**ପ୍ରଶ୍ନ**—ଘରେ ମୂଷା, ମଶା, ଓଡ଼ଶ, ଝିଟିପିଟି ଆଦି ଜୀବଙ୍କ ପ୍ରତି କିପରି ବ୍ୟବହାର କରିବା ଉଚିତ?

**ଉତ୍ତର**—ମୂଷା ଆଦି ଜୀବମାନଙ୍କୁ ଗୃହର ସଦସ୍ୟ ବୋଲି ଭାବିବା ଉଚିତ । ସେମାନେ ଆମ ଘରେ ବସାବାନ୍ଧି ଆଶ୍ରୟ ନେଇଛନ୍ତି । ଘରେ ରହିବାର ଅଧିକାର ସେମାନଙ୍କର ମଧ୍ୟ ଅଛି । ଆଜିକାଲି ଲୋକେ ସେମାନଙ୍କୁ ମାରି ଦିଅନ୍ତି । କିନ୍ତୁ ସେମାନଙ୍କୁ ଯଥାଶକ୍ତି ପାଳନ କରିବା ଉଚିତ । ନିଜକୁ ରକ୍ଷା କରିବାରେ ମନୁଷ୍ୟର ଅଧିକାର ଅଛି ସତ, କିନ୍ତୁ କାହାକୁ ହତ୍ୟା କରିବାରେ ତାହାର ଅଧିକାର ନାହିଁ । ମନୁଷ୍ୟ ଯେପରି ପୃଥିବୀରେ ଘର କରି ରହିଛି, ମୂଷା ଆଦି ଜୀବମାନେ ସେହିପରି ନିଜ ନିଜ ଆଶ୍ରୟସ୍ଥଳ ବାଛିଛନ୍ତି । ଘରେ ସାପ, ବିଛା ଆଦି ବିଷାକ୍ତ ଜୀବ ଥିଲେ, ସେମାନଙ୍କୁ କୌଶଳକ୍ରମେ ଘର ବାହାରେ ସୁରକ୍ଷିତ ସ୍ଥାନରେ ଛାଡ଼ିଦେବା ଉଚିତ ।

ଘର ସଫା ନ ରଖିଲେ ମଶା, ଓଡ଼ଶ ଆଦି ଜାତ ହୁଅନ୍ତି । ସେମାନେ ଯେପରି ଜାତ ନ ହେବେ, ସେଥିପାଇଁ ଘରକୁ ନିର୍ମଳ ରଖିବା ଆବଶ୍ୟକ । ଘର ସ୍ୱଚ୍ଛ ରଖି ସୁଦ୍ଧା ସେମାନେ ଜାତ ହେଲେ ସେମାନଙ୍କୁ ମାରିବାର ଅଧିକାର ଆମର ନାହିଁ ।

**ପ୍ରଶ୍ନ**—ଘରେ କୁକୁର ପୋଷିବା ଉଚିତ କି?

**ଉତ୍ତର**—କୁକୁର ପୋଷିବା ଲୋକ ନରକଗାମୀ ହୁଏ । ମହାଭାରତରେ କୁହାଯାଇଛି—ପଞ୍ଚପାଣ୍ଡବ ଓ ଦ୍ରୌପଦୀ ଯୁଦ୍ଧପରେ ହିମାଳୟ ଯାତ୍ରା କରିବା ସମୟରେ ଯୁଧିଷ୍ଠିରଙ୍କ ଛଡ଼ା ସମସ୍ତେ ମାର୍ଗରେ ଟଳି ପଡ଼ିଲେ । ସେତେବେଳେ ମାତଳି ଇନ୍ଦ୍ରଙ୍କ ଆଦେଶରେ ରଥ ଘେନି ସେଠାରେ ପହଞ୍ଚି ସଶରୀରେ ସ୍ୱର୍ଗଯାତ୍ରା ପାଇଁ ଯୁଧିଷ୍ଠିରଙ୍କୁ

ଅନୁରୋଧ କଲେ । ଯୁଧିଷ୍ଠିରଙ୍କ ପାଖରେ ଗୋଟିଏ କୁକୁର ଠିଆ ହୋଇଥିଲା । ଯୁଧିଷ୍ଠିର ପ୍ରସ୍ତାବ ଦେଲେ ଯେ କୁକୁରଟି ତାଙ୍କ ଶରଣକୁ ଆସିଥିବାରୁ ସେ ମଧ୍ୟ ତାଙ୍କ ସାଥିରେ ସ୍ୱର୍ଗପୁରକୁ ଯିବ । ସେତେବେଳେ ଇନ୍ଦ୍ର ଯୁଧିଷ୍ଠିରଙ୍କୁ କହିଲେ—

**ସ୍ୱର୍ଗେ ଲୋକେ ଶ୍ୱବତାଂ ନାସ୍ତି ଧିଷ୍ଣ୍ୟମିଷ୍ଟାପୂର୍ତ୍ତିଂ କ୍ରୋଧବଶା ହରନ୍ତି ।**
**ତତୋ ବିମୃଶ୍ୟ କ୍ରିୟତାଂ ଧର୍ମରାଜ ତ୍ୟଜ ଶ୍ୱାନଂ ନାତ୍ର ନୃଶଂସମସ୍ତି ॥**

(ମହାଭାରତ, ମହାପ୍ରସ୍ଥାନ ୩ । ୧୦)

ଅର୍ଥାତ୍ "ହେ ଧର୍ମରାଜ! କୁକୁର ରଖିବା ଲୋକଙ୍କ ପାଇଁ ସ୍ୱର୍ଗରେ ସ୍ଥାନ ନାହିଁ । ସେମାନେ ଯଜ୍ଞାନୁଷ୍ଠାନ, କୂପ ନିର୍ମାଣାଦି ପରୋପକାର କାର୍ଯ୍ୟ ଦ୍ୱାରା ଯେଉଁ ପୁଣ୍ୟ ଅର୍ଜନ କରନ୍ତି, ତାହା କ୍ରୋଧବଶ ନାମକ ରାକ୍ଷସମାନେ ହରଣ କରି ନିଅନ୍ତି । ତେଣୁ ବୁଝି ବିଚାରି କର୍ମ କର ଓ କୁକୁରକୁ ଏଠାରେ ଛାଡ଼ିଦିଅ । ଏପରି କରିବା କୌଣସି ପ୍ରକାର ନିର୍ଦ୍ଦୟତା ନୁହେଁ ।"

ଯୁଧିଷ୍ଠିର କହିଲେ—ଏହି କୁକୁର ମୋର ଶରଣକୁ ଆସିଛି, ଏହାକୁ ମୁଁ ପାଳନ କରି ନାହିଁ । ଏବେ ଏହାକୁ ମୋର ଅଧା ପୁଣ୍ୟ ଦାନ କରୁଅଛି, ସେ ମୋ ସହିତ ସ୍ୱର୍ଗକୁ ଯିବ । ଏହା କହିବା ପରେ କୁକୁରଠାରୁ ଧର୍ମରାଜ ପ୍ରକଟିତ ହେଲେ । ସେ କହିଲେ—ହେ ଯୁଧିଷ୍ଠିର! ମୁଁ ତୁମକୁ ପରୀକ୍ଷା କରିବା ପାଇଁ ଆସିଥିଲି । ତୁମେ ଜୟଲାଭ କଲ । ବର୍ତ୍ତମାନ ସ୍ୱର୍ଗଯାତ୍ରା କର ।

ତାତ୍ପର୍ଯ୍ୟ ହେଉଛି ଯେ ଗୃହସ୍ଥ ନିଜ ଘରେ କୁକୁର ରଖିବା ଉଚିତ ନୁହେଁ । ମହାଭାରତରେ କୁହାଯାଇଛି—

**ଭିନ୍ନଭାଣ୍ଡଂ ଚ ଖଟ୍ୱାଂ ଚ କୁକ୍କୁଟଂ ଶୁନକଂ ତଥା ।**
**ଅପ୍ରଶସ୍ତାନି ସର୍ବାଣି ଯଶ୍ଚ ବୃକ୍ଷୋ ଗୃହେରୁହଃ ॥**
**ଭିନ୍ନଭାଣ୍ଡେ କଲିଂ ପ୍ରାହୁଃ ଖଟ୍ୱାୟାଂ ତୁ ଧନକ୍ଷୟଃ ।**
**କୁକ୍କୁଟେ ଶୁନକେ ଚୈବ ହବିର୍ନାଶ୍ନନ୍ତି ଦେବତାଃ ।**
**ବୃକ୍ଷମୂଳେ ଧ୍ରୁବଂ ସତ୍ତ୍ୱଂ ତସ୍ମାଦ୍ ବୃକ୍ଷଂ ନ ରୋପୟେତ୍ ॥**

(ମହାଭାରତ, ଅନୁ. ୧୨୭ । ୧୫ ଓ ୧୬)

ଅର୍ଥାତ୍ "ଘରେ ଫଟା ବାସନ, ଭଙ୍ଗା ଖଟ, କୁକୁର ଓ ଓସ୍ତ ଆଦି ବୃକ୍ଷ ରଖିବା ଉଚିତ ନୁହେଁ । ଫଟା ବାସନରେ କଳିଯୁଗ ରହେ ବୋଲି କୁହାଯାଏ । ଭଙ୍ଗା ଖଟ ଥିଲେ ଧନହାନି ଘଟେ । କୁକୁଡ଼ା ଓ କୁକୁର ଥିଲେ ଦେବତାମାନେ ସେହି ଗୃହରେ ହବିଷ୍ୟ ଗ୍ରହଣ କରନ୍ତି ନାହିଁ । ଘର ପରିସର ଭିତରେ ବଡ଼ ଗଛ ଥିଲେ, ସେଥିରେ ସାପ, ବିଛା ଆଦି ବିଷାକ୍ତ ଜନ୍ତୁ ରହନ୍ତି । ତେଣୁ ଘର ପରିସର ଭିତରେ ଗଛ ଲଗାଇବା ଉଚିତ ନୁହେଁ ।"

କୁକୁର ଅଶୁଦ୍ଧ ଓ ଅପବିତ୍ର ଜନ୍ତୁ। ତାହାର ଖାଦ୍ୟପେୟ, ସ୍ପର୍ଶ, ଏଠାରେ ସେଠାରେ ବସିବା ଆଦି ଦ୍ୱାରା ଗୃହସ୍ଥର ଗୃହକାର୍ଯ୍ୟ ଅନିର୍ମଳ ଓ ଅଶୁଦ୍ଧ ହୁଏ। ଅପବିତ୍ରତାର ଫଳ ମଧ୍ୟ ଅପବିତ୍ର (ନରକ ଆଦି) ହୁଏ।

**ପ୍ରଶ୍ନ**—କୃଷିକ୍ଷେତ୍ର ପ୍ରଭୃତିର ସୁରକ୍ଷା ପାଇଁ କୁକୁର ରଖିଲେ ହାନି କ'ଣ?

**ଉତ୍ତର**—କୁକୁରକୁ ଶସ୍ୟକ୍ଷେତ୍ରର ସୁରକ୍ଷା ପାଇଁ ରଖାଯାଇପାରେ। ତାହାକୁ ଖାଦ୍ୟପେୟ ଦିଆଯିବା ଉଚିତ। କିନ୍ତୁ ତା'ଠାରୁ ଦୂରରେ ରହିବା ବାଞ୍ଛନୀୟ। ତାକୁ ନିଜ ପାଖରେ ରଖିବା, ସାଥିରେ ବୁଲାଇବା, ଛୁଆଁଛୁଇଁ କରିବା ନିଷିଦ୍ଧ ଅଟେ। କୁକୁରକୁ ପାଳନ କରିବାରେ ଦୋଷ ନାହିଁ। ପ୍ରକୃତ ପକ୍ଷରେ ସବୁ ପ୍ରାଣୀଙ୍କର ପାଳନ କରିବା ଗୃହସ୍ଥର କର୍ତ୍ତବ୍ୟ, ପରନ୍ତୁ କୁକୁର ସାଥିରେ ମିଳିମିଶି ରହିବା, ତାକୁ ପାଖରେ ଶୁଆଇବା, ତା'ଠାରେ ଅଯଥା ଆସକ୍ତି ରଖିବା ପତନର କାରଣ ଅଟେ। ଜୀବନର ଶେଷସମୟରେ କୁକୁର କଥା ମନେ ପଡ଼ିଲେ ପରବର୍ତ୍ତୀ ଜନ୍ମରେ କୁକୁର ହେବାକୁ ପଡ଼େ*।

**ପ୍ରଶ୍ନ**—ଘରଛାତ ଅଥବା କାନ୍ଥ ଉପରେ ଓସ୍ତ ଗଛ ଉଠିଲେ ତାକୁ ଉପାଡ଼ି ଦେବା ଉଚିତ କି?

**ଉତ୍ତର**—ତାକୁ ଉପାଡ଼ି ଦେଇ ଛକ ଜାଗାରେ, ମନ୍ଦିର ପାଖରେ ଅଥବା ଗ୍ରାମର ଉପଯୁକ୍ତ ସ୍ଥାନରେ ଲଗାଇବା ଉଚିତ। ତାକୁ ଜଳ ଦେଇ ବଢ଼ାଇବା ଆବଶ୍ୟକ। ଗଛକୁ ନ କାଟି ଦରକାର ପଡ଼ିଲେ ଛାତ ବା କାନ୍ଥର କିଛି ଅଂଶ ଭାଙ୍ଗିଦେଇ ମୂଳ ସହିତ ଓସ୍ତ ଗଛକୁ ଅନ୍ୟ ସ୍ଥାନରେ ପୋତିବା ପାଇଁ ଆଣିବା ଉଚିତ। ଓସ୍ତ, ବର, ଜରି, ଅଁଳା, ତୁଳସୀ ଆଦି ପବିତ୍ର ବୃକ୍ଷଗୁଡ଼ିକ ମନୁଷ୍ୟକୁ ପବିତ୍ର କରନ୍ତି। ତେଣୁ ସେଗୁଡ଼ିକୁ ବିଶେଷ ଆଦର କରିବା ଉଚିତ।

**ପ୍ରଶ୍ନ**—ଜୀବନନିର୍ବାହ ପାଇଁ ଗୃହସ୍ଥ କେଉଁ ପ୍ରକାରେ ଧନ ଅର୍ଜନ କରିବେ?

**ଉତ୍ତର**—ନିଜେ ପରିଶ୍ରମ କରି ଓ ଅନ୍ୟର ସ୍ୱତ୍ୱ ନିଜ ପାଖକୁ ଆସି ନ ଯିବାକୁ ସାବଧାନ ହୋଇ ଗୃହସ୍ଥ ଧନ ଅର୍ଜନ କରିବେ। ଯେତିକି ଧନ ଅର୍ଜିତ ହେଉଛି, ତାହାର ଦଶ, ପନ୍ଦର ଅଥବା କୋଡ଼ିଏ ଭାଗରୁ ଭାଗେ ଦାନପୁଣ୍ୟ ପାଇଁ

---

* ଯଂ ଯଂ ବାପି ସ୍ମରନ୍ ଭାବଂ ତ୍ୟଜତ୍ୟନ୍ତେ କଳେବରମ୍।
ତଂ ତମେବୈତି କୌନ୍ତେୟ ସଦା ତଦ୍‌ଭାବ ଭାବିତଃ॥ (ଗୀତା ୮। ୬)

"ହେ କୁନ୍ତୀପୁତ୍ର ଅର୍ଜୁନ! ମନୁଷ୍ୟ ଶେଷସମୟରେ ଯେଉଁ ଯେଉଁ ଭାବନା କରି ଦେହତ୍ୟାଗ କରେ, ସେ ସେହି ଭାବରେ ସର୍ବଦା ଭାବିତ ହୋଇ ସେହି ଭାବକୁ ପ୍ରାପ୍ତ ହୁଏ ଅର୍ଥାତ୍ ସେହି ସେହି ଯୋନିକୁ ଚାଲିଯାଏ।"

ରଖିବେ । ଧନ ଉପାର୍ଜନ କରିବା ସମୟରେ କିଛି ନା କିଛି ଦୋଷ ରହିଯାଏ । ସେହି ଦୋଷର ପ୍ରାୟଶ୍ଚିତ୍ତ ପାଇଁ କିଛି ଧନ ଲୋକମଙ୍ଗଳ ପାଇଁ ବ୍ୟୟ କରିବା ଉଚିତ ।

**ପ୍ରଶ୍ନ**—ଆଜିକାଲି ସରକାରୀ କାନୁନ୍ ଏପରି ହୋଇଛି ଯେ ସତ୍ ଉପାୟରେ ଧନ ଅର୍ଜିତ ହୋଇପାରୁ ନାହିଁ । ତେଣୁ କ'ଣ କରିବା ଉଚିତ?

**ଉତ୍ତର**—ସରକାରୀ କାନୁନ୍‌ରୁ ଉଦ୍ଧାର ପାଇବାର ଉପାୟ ହେଉଛି—ନିଜର ଖର୍ଚ୍ଚ କମ୍ କରିବା । ତେଣୁ ସ୍ୱାଦ, ସୌଖୀନତା ଓ ଆଡମ୍ବରରେ ଧନ ଖର୍ଚ୍ଚ କର ନାହିଁ । ସାଧାରଣ ରୀତିରେ ଚଳ । ସରଳ ଓ ସାତ୍ତ୍ୱିକ ଜୀବନ ଅତିବାହିତ କର । ଧନ ଅର୍ଜନ କରିବା ନିଜ ହାତରେ ନାହିଁ । ତାହା ଯେତିକି ମିଳିବା କଥା, ସେତିକି ମିଳିବ । ପରନ୍ତୁ ବ୍ୟୟ କରିବା ନିଜ ହାତର କଥା, ସେଥିରେ ଆମେ ସ୍ୱତନ୍ତ୍ର ।

**ପ୍ରଶ୍ନ**—ଦେଖାଯାଉଛି ଯେ ସମ୍ପୂର୍ଣ୍ଣ କର ଦେବା ଦ୍ୱାରା ଆମ ଧନ କମି ଯାଉଛି । ପୂର୍ଣ୍ଣ ଭାବରେ ନ ଦେଇ କିଛି ଲୁଗ୍ଭଇଦେଲେ ଧନ ରହୁଛି । ତେଣୁ ଲୁଗ୍ଭଇବା ଉଚିତ ନୁହେଁ କି?

**ଉତ୍ତର**—କର ଦେବାରେ ଠକିଲେ ଧନ ରହେ ସତ, କିନ୍ତୁ ଶେଷରେ ସେ ଧନ ଗ୍ଭଲିଯାଏ* । ଠକାମି କରି ରଖିଥିବା ଧନ ନିଜ କାର୍ଯ୍ୟରେ ଲାଗେ ନାହିଁ । ଅନ୍ୟପକ୍ଷରେ ଯେଉଁ ମିଥ୍ୟା, କପଟ ଓ ଅନ୍ୟାୟ ଦ୍ୱାରା ଧନ ସଂଚୟ କରାଯାଏ, ସେଥିପାଇଁ ଦଣ୍ଡ ଅବଶ୍ୟ ମିଳେ । ଶେଷରେ ଅନ୍ୟାୟପୂର୍ବକ ଉପାର୍ଜନ କରିଥିବା ଧନ ଛାଡ଼ିଦେଇ ମରିବାକୁ ହୁଏ । ଅନ୍ୟାୟରେ ଅର୍ଜିତ ଧନ ଡାକ୍ତର, ଓକିଲଙ୍କ ପାଖକୁ ଯାଏ ଅଥବା ଗ୍ଭେର, ଡକାୟତ ନେଇଯାଆନ୍ତି ଅଥବା ବ୍ୟାଙ୍କରେ ପଡ଼ି ରହେ; କିନ୍ତୁ ନିଜ କାର୍ଯ୍ୟରେ ଲାଗେ ନାହିଁ । ଯେଉଁ ଧନ ନିଜ କାର୍ଯ୍ୟରେ ଲାଗିପାରେ ନାହିଁ, ସେଥିପାଇଁ ପାପ ଓ ଅନ୍ୟାୟ କରି ଲାଭ କ'ଣ?

ସତ୍ ଉପାୟରେ ଯେ ଧନ କମ୍ ଅର୍ଜିତ ହୁଏ, ଏପରି ଭାବିବା ଠିକ୍ ନୁହେଁ । ଆମକୁ ଯେତିକି ଧନ ମିଳିବାର ଥିବ, ତାହା ଯେଉଁ ମାର୍ଗରେ ହେଉ ପଛେ ଆସିବ । ଏଭଳି ଅନେକ ଉଦାହରଣ ଦେଖାଯାଏ ଯେ ଯେଉଁମାନେ ଧନ ନିଅନ୍ତି ନାହିଁ, ସେମାନଙ୍କ ପାଖକୁ ବହୁତ ଧନ ଆସେ । ଯେପରି ରୋଗ, ଦୁଃଖ ଆଦି ଆମେ ନ

---

* ଅନ୍ୟାୟୋପାର୍ଜିତଂ ଦ୍ରବ୍ୟଂ ଦଶବର୍ଷାଣି ତିଷ୍ଠତି ।
ପ୍ରାପ୍ତେ ଚୈକାଦଶେ ବର୍ଷେ ସମୂଳଂ ତଦ୍‌ବିନଶ୍ୟତି ॥

"ଅନ୍ୟାୟରେ ଅର୍ଜିତ ଧନ ଦଶ ବର୍ଷ ପର୍ଯ୍ୟନ୍ତ ରହେ । ଏଗାର ବର୍ଷ ବେଳକୁ ତାହା ସମୂଳେ ନଷ୍ଟ ହୋଇଯାଏ ।"

ଗ୍ରହିଁଲେ ମଧ୍ୟ ଆସେ, ସେହିପରି ବିନା ଚେଷ୍ଟାରେ ଧନ ଓ ସୁଖ ମଧ୍ୟ ଆସିବ ।

**ସୁଖମୈନ୍ଦ୍ରିୟକଂ ରାଜନ୍ ସ୍ୱର୍ଗେ ନରକ ଏବ ଚ ।**
**ଦେହିନାଂ ଯଦ୍ ଯଥା ଦୁଃଖଂ ତସ୍ମାନ୍ନେଚ୍ଛେତ ତଦ୍ ବୁଧଃ ॥**

(ଶ୍ରୀମଦ୍‌ଭାଗବତ ୧୧ । ୮ । ୧)

ଅର୍ଥାତ୍—''ହେ ରାଜନ୍! ଯେପରି ବିନା ଇଚ୍ଛାରେ ପ୍ରାଣୀମାନଙ୍କୁ ପ୍ରାରବ୍ଧ ଅନୁସାରେ ଦୁଃଖ ପ୍ରାପ୍ତ ହୁଏ, ସେହିପରି ସ୍ୱର୍ଗରେ ଓ ନରକରେ ମଧ୍ୟ ଇନ୍ଦ୍ରିୟଜନିତ ସୁଖ ପ୍ରାପ୍ତ ହୁଏ । ତେଣୁ ବୁଦ୍ଧିମାନ୍ ମନୁଷ୍ୟ ପକ୍ଷରେ ସେସବୁ ସୁଖ ପାଇଁ ଇଚ୍ଛା କରିବା ଉଚିତ ନୁହେଁ ।''



## (୩) ବାଳକ ବିଷୟକ ଉପଦେଶ

**ପ୍ରଶ୍ନ**—ଆଦର୍ଶ ସନ୍ତାନ କିପରି ଜାତ ହେବେ?

**ଉତ୍ତର**—ଯେତେବେଳେ ମାତା-ପିତାଙ୍କ ଭାବ ଓ ଆଚରଣ ଆଦର୍ଶମୟ ହେବ, କେବଳ ପିତୃଋଣରୁ ଉଦ୍ଧାର ପାଇଁ ସେମାନେ ସନ୍ତାନକୁ ଜନ୍ମଦେବେ, ସେତେବେଳେ ଆଦର୍ଶ ସନ୍ତାନ ଜାତ ହେବେ । ସୁଖ-ସମ୍ଭୋଗରୁ ଉତ୍ପନ୍ନ ସନ୍ତାନ ପ୍ରାୟ ଉତ୍ତମ ହୁଅନ୍ତି ନାହିଁ । କୁନ୍ତୀଙ୍କ ଆଦର୍ଶ ବିଚାର ଓ ଆଚରଣ ହେତୁ ତାଙ୍କଠାରୁ ଧର୍ମରାଜ ଜନ୍ମ ଗ୍ରହଣ କରିଥିଲେ ।

ଗର୍ଭବତୀ ହେବା ପରେ ଶ୍ରେଷ୍ଠ ସନ୍ତାନ ପାଇଁ ମାଆମାନେ ପ୍ରଭୁଭକ୍ତି କରିବେ, ଭକ୍ତମାନଙ୍କ ଚରିତ ଶୁଣିବେ ଓ ଆଧ୍ୟାତ୍ମିକ ଦୃଶ୍ୟ ଦେଖିବେ । ପ୍ରହ୍ଲାଦ ଗର୍ଭରେ ଥିବା ସମୟରେ ନାରଦ କୟାଧୂଙ୍କୁ ଭଗବାନଙ୍କ ଚରିତ ଓ ଆଧ୍ୟାତ୍ମିକ ଉପଦେଶ ଶୁଣାଇଥିବାରୁ ରାକ୍ଷସ କୁଳରେ ଜନ୍ମ ପାଇ ମଧ୍ୟ ପ୍ରହ୍ଲାଦ ଶ୍ରେଷ୍ଠ ଭକ୍ତ ହୋଇଥିଲେ ।

ସତ୍କର୍ମ, ସତ୍‌ଚିନ୍ତନ, ସତ୍‌ଚର୍ଚ୍ଚା ଓ ସତ୍ସଙ୍ଗ—ଏହି ଚାରୋଟି ମୁଖ୍ୟ ଅଟେ । ଉତ୍ତମ କର୍ମ କରିବା 'ସତ୍କର୍ମ' । ଅନ୍ୟମାନଙ୍କର ହିତ ଓ ଭଗବାନଙ୍କ ବିଷୟରେ ଚିନ୍ତନ କରିବା 'ସତ୍‌ଚିନ୍ତନ' । ଭକ୍ତ ଓ ଭଗବାନଙ୍କ ବିଷୟ କହିବା ଓ ଶୁଣିବା 'ସତ୍‌ଚର୍ଚ୍ଚା' । ମୁଁ ଭଗବାନଙ୍କର ଓ ଭଗବାନ ମୋର—ଏଇ ଭାବନାରେ ଭଗବାନଙ୍କ ସଙ୍ଗେ ସଂଲଗ୍ନ ରହିବା 'ସତ୍ସଙ୍ଗ' । ଏଇ ଚାରି କର୍ମ କଲେ ଆଦର୍ଶ ଓ ଶ୍ରେଷ୍ଠ ସନ୍ତାନ ଜାତ ହୁଅନ୍ତି ।

ମନୁଷ୍ୟଜନ୍ମରେ ହିଁ ବିକାଶ କରିବାର ଓ ନିଜକୁ ଉନ୍ନତ କରିବାର ସୁଯୋଗ ରହିଛି । ତେଣୁ ମନୁଷ୍ୟ ସନ୍ଥମହାତ୍ମାମାନଙ୍କ ସତ୍ସଙ୍ଗ କରିବା ଦ୍ୱାରା ଏହି ଉଦ୍ଦେଶ୍ୟ ପୂର୍ଣ୍ଣ କରିପାରେ । ମହାତ୍ମା ନ ମିଳିଲେ ଉଚ୍ଚତମ ସାଧକମାନଙ୍କ ସତ୍ସଙ୍ଗ କର ।

ସାଧକ ନ ମିଳିଲେ ଗୀତା-ରାମାୟଣ ଆଦି ସତ୍‌ଶାସ୍ତ୍ର ସ୍ୱାଧ୍ୟାୟ କର ଓ ନିଜର ଉଦ୍ଧାର ପାଇଁ ପ୍ରଯତ୍ନ କର। ଏହାଦ୍ୱାରା ମନୁଷ୍ୟ ଶ୍ରେଷ୍ଠ ହୋଇ ପାରିବ।

**ପ୍ରଶ୍ନ**—କେତେକ କ୍ଷେତ୍ରରେ ମାତାପିତାଙ୍କ ଆଚରଣ ଓ ଭାବନା ଉତ୍ତମ ହୋଇଥିଲେ ସୁଦ୍ଧା ପିଲାମାନେ ଭଲ ହୁଅନ୍ତି ନାହିଁ—ଏହାର କାରଣ କ'ଣ?

**ଉତ୍ତର**—ଏହାର ମୁଖ୍ୟ କାରଣ କୁସଙ୍ଗ। ବେଳେବେଳେ ଋଣାନୁବନ୍ଧରୁ ପୂର୍ବଜନ୍ମକୃତ କର୍ମର ପ୍ରତିଶୋଧ ନେବା ପାଇଁ ମଧ୍ୟ ଏଭଳି ଦୁଷ୍ଟସନ୍ତାନ ଜାତ ହୁଅନ୍ତି। କୁସଙ୍ଗରେ ପଡ଼ିଥିବା ପୁତ୍ର ସତ୍ସଙ୍ଗ ଦ୍ୱାରା ବଦଳି ଯାଇପାରେ। ପରନ୍ତୁ ଯେ ପୂର୍ବଜନ୍ମର ପ୍ରତିଶୋଧ ନେବା ପାଇଁ ଆସିଛି, ସେ ସନ୍ତାନ ନିଶ୍ଚିତଭାବରେ ଦୁଃଖଦାୟୀ ହେବ। ଏପରି ଘଟିଲେ ମାତା-ପିତା ଦୁଃଖୀ ନ ହୋଇ ଭାବିବେ ଯେ ସେମାନଙ୍କର ଋଣ କଟିଯାଉଛି।

ବିଶ୍ରବା ଋଷି ବ୍ରାହ୍ମଣ କୁଳର ଥିଲେ; ପରନ୍ତୁ ତାଙ୍କର ପତ୍ନୀ କୈକସୀ ରାକ୍ଷସ କୁଳର ହୋଇଥିବାରୁ ରାବଣ ଜନ୍ମ ହେଲା। ଉଗ୍ରସେନ ଧର୍ମାତ୍ମା ଥିଲେ; ମାତ୍ର ଦିନେ ଜଣେ ରାକ୍ଷସ ଉଗ୍ରସେନଙ୍କ ରୂପ ଧାରଣ କରି ତାଙ୍କ ପତ୍ନୀଙ୍କ ସହିତ ସହବାସ କରିବାରୁ କଂସ ଜନ୍ମ ହେଲା।

**ପ୍ରଶ୍ନ**—ଦେଖାଯାଏ ଯେ ମାତାପିତାଙ୍କ ଆଚରଣ ଉତ୍ତମ ନ ଥାଇ ସୁଦ୍ଧା ସେମାନଙ୍କ ସନ୍ତାନମାନେ ପୁଣ୍ୟାତ୍ମା ହୁଅନ୍ତି—ଏହାର କାରଣ କ'ଣ?

**ଉତ୍ତର**—ସନ୍ତାନମାନଙ୍କ ଠାରେ ସାଧାରଣତଃ ମାଆ-ବାପାଙ୍କ ସ୍ୱଭାବ ପ୍ରତିଫଳିତ ହୋଇଥାଏ। ପରନ୍ତୁ ଋଣାନୁବନ୍ଧରୁ ଅଥବା ଗର୍ଭାଧାନ ସମୟରେ ଉତ୍ତମ ପ୍ରଭାବ ପଡ଼ିଥିବାରୁ ଅଥବା ଗର୍ଭାବସ୍ଥାରେ ସନ୍ଥ-ମହାତ୍ମାଙ୍କ ଉପଦେଶ ପ୍ରଭାବରୁ ସୁସନ୍ତାନ ଉତ୍ପନ୍ନ ହୁଅନ୍ତି। ହିରଣ୍ୟକଶିପୁଠାରୁ ପ୍ରହ୍ଲାଦ ଜନ୍ମ ହୋଇଥିଲେ। ପ୍ରହ୍ଲାଦଙ୍କ ଜନ୍ମ ବୃତ୍ତାନ୍ତ ବିଷୟରେ ବର୍ଣ୍ଣିତ ଅଛି ଯେ ତପସ୍ୟାରେ ବିଘ୍ନ ସୃଷ୍ଟି ହେବାରୁ ହିରଣ୍ୟକଶିପୁ ଘରକୁ ଆସିଲା ଓ ଗର୍ଭାଧାନ ସମୟରେ ସ୍ତ୍ରୀ ସହ କଥାବାର୍ତ୍ତା ହେବା ମଧ୍ୟରେ ତା ମୁଖରୁ କେତେଥର ବିଷ୍ଣୁନାମ ଉଚ୍ଚାରିତ ହୋଇଥିଲା। ସ୍ତ୍ରୀ କୟାଧୂ ଗର୍ଭବତୀ ଥିବା ସମୟରେ ନାରଦ ଉପଦେଶ ଦେଇଥିଲେ। ତେଣୁ ପ୍ରହ୍ଲାଦ ଭକ୍ତିମାନ୍ ପୁରୁଷ ହେଲେ। ଜଳର ରସ ମଧୁର; କିନ୍ତୁ ଭୂମି ସଂସ୍ପର୍ଶରେ ଆସି ସେହି ରସ ବଦଳିଯାଏ। (ଯଥା—ଭିନ୍ନ ଭିନ୍ନ କୂଅର ଜଳ ଭିନ୍ନ ଭିନ୍ନ ସ୍ୱାଦର ହୋଇଥାଏ।) ଠିକ୍ ସେହିପରି ସଙ୍ଗ କାରଣରୁ ମନୁଷ୍ୟର ବିଗ୍ରହ ବଦଳିଯାଏ।

**ପ୍ରଶ୍ନ**—ପିତାଙ୍କ ଆତ୍ମା ପୁତ୍ର ରୂପରେ ଆସେ—ଏହାର ଅର୍ଥ କ'ଣ?

**ଉତ୍ତର**—କୌଣସି ବ୍ରାହ୍ମଣଙ୍କୁ କୁଳଗୁରୁରୂପରେ ଗ୍ରହଣ କରାଯାଉଥିଲେ

ମୃତ୍ୟୁପରେ ତାଙ୍କ ପୁତ୍ରକୁ ମଧ୍ୟ ଗୁରୁ ମନେ କରାଯାଇ ତଦନୁରୂପ ସମ୍ମାନ ଦିଆଯାଏ* । ପିତା ଧନର ମାଲିକ ହୋଇଥାନ୍ତି । ତାଙ୍କ ମୃତ୍ୟୁପରେ ପୁତ୍ର ସେହି ଧନ ଲାଭ କରେ । ଠିକ୍ ସେହିପରି ପୁତ୍ର ପିତାଙ୍କ ପ୍ରତିନିଧି ଅଟେ । ଏଠାରେ "ଆତ୍ମା" ଶବ୍ଦ ଦେହର ବାଚକ । ଦେହରୁ ଦେହ (ପୁତ୍ର) ଉତ୍ପନ୍ନ ହୁଏ । ତେଣୁ ବ୍ୟବହାରିକ କ୍ଷେତ୍ରରେ ପୁତ୍ର ପିତାଙ୍କ ପ୍ରତିନିଧି ହୁଏ । କିନ୍ତୁ ପରମାର୍ଥ ଦୃଷ୍ଟିରୁ ଏହା ହୋଇ ନ ଥାଏ ।

**ପ୍ରଶ୍ନ**—ବାଳକକୁ ଶ୍ରେଷ୍ଠରୂପେ ଗଢ଼ିବା ପାଇଁ କିଭଳି ଶିକ୍ଷା ଦେବା ଆବଶ୍ୟକ?

**ଉତ୍ତର**—ବାଳକମାନେ ଯାହା ଦେଖନ୍ତି, ତାହା ଶିଖନ୍ତି । ତେଣୁ ମାତା-ପିତାଙ୍କ କର୍ତ୍ତବ୍ୟ ହେଉଛି ଯେ ସେମାନେ ପିଲାମାନଙ୍କ ସମ୍ମୁଖରେ ଉତ୍ତମ ଆଚରଣ କରିବେ ଏବଂ ସଂଯମୀ ଓ ପବିତ୍ର ଜୀବନଯାପନ କରିବେ । ତାହାହେଲେ ସନ୍ତାନମାନେ ଉତ୍ତମ ହେବେ । ଦ୍ୱିତୀୟତଃ ସେମାନେ ପୁତ୍ର-କନ୍ୟାଙ୍କୁ ଶିକ୍ଷଣୀୟ ଉପଦେଶ ଦେବେ । ଭକ୍ତ ଓ ଭଗବାନଙ୍କ ଚରିତ୍ର ଶୁଣାଇବେ । ପ୍ରକୃତରେ ବ୍ୟବହାରିକ କ୍ଷେତ୍ରରେ ପାରମାର୍ଥିକ କୌଶଳ ଶିଖାଇବାକୁ ଉତ୍ତମ ଶିକ୍ଷା କୁହାଯାଇଥାଏ । ଏହାର କିଛି ଉଦାହରଣ ହେଲା–ବାହାରକୁ ଯିବାବେଳେ ମାତା-ପିତା ସନ୍ତାନମାନଙ୍କୁ 'ତୁମେ ଘରେ ରହିଥାଅ' ଏପରି ନ କହି ପ୍ରଥମରୁ ବୁଝାଇ ଶୁଝାଇ କହିଦେବା ଉଚିତ 'ଆମେ କେଉଁଆଡ଼େ ଗଲାବେଳେ ତୁମେମାନେ ସଙ୍ଗରେ ଯିବାକୁ ଜିଦି କରିବ ନାହିଁ; ଆମେ ଯେମିତି କହିବୁ, ସେମିତି କରିବ' । ଏଭଳି ଦିନକୁ ଦୁଇ ତିନି ଥର କହିଲେ ପିଲାମାନେ ମାନିଯିବେ ଏବଂ ଯିବା ପାଇଁ ଜିଦ୍ ନ କରି ଆଜ୍ଞା ପାଳନ କରିବେ । ଘରକୁ ଫଳ ବା ମିଷ୍ଟ ପଦାର୍ଥ ଆସିଲେ ଖାଇବା ପାଇଁ ପିଲାମାନେ ଜିଦ୍ କରନ୍ତି । ସେମାନଙ୍କୁ ଶିକ୍ଷାଦେବା ଉଚିତ—ଘରକୁ କୌଣସି ଖାଦ୍ୟପଦାର୍ଥ ଆସିଲେ ତାହା ବାଣ୍ଟି ଖାଇବ । ଅନ୍ୟକୁ ଖୁଆଇ ସାରି ଖାଇଲେ ତୁମେ ବୈକୁଣ୍ଠକୁ ଯିବ । ଆଦର ଓ ସ୍ନେହପୂର୍ବକ ଦିନକୁ ଦୁଇ ତିନି ଥର ସନ୍ତାନମାନଙ୍କୁ ଏହା ବୁଝାଇଦେଲେ, ସେମାନେ ତାହା ଗ୍ରହଣ କରି ନିଅନ୍ତି । ସନ୍ତାନମାନଙ୍କୁ ଉତ୍ତମ ଉତ୍ତମ କଥା ଶିଖାଇବା ଉଚିତ—"ଦେଖ ପିଲେ! କୌଣସି ପଦାର୍ଥ ଚୋରି କରିବ ନାହିଁ । ମାଆଙ୍କୁ ମାଗିବ, ନ ଦେଲେ କାନ୍ଦିବ; କିନ୍ତୁ ଚୋରି କରିବ ନାହିଁ । ବାପାମାଆଙ୍କ ବୋଲ ମାନି ଘରର କାମଧନ୍ଦା କରିବ । ରାମ

* ଅର୍ଜୁନ ଅଶ୍ୱତ୍ଥାମାକୁ ବାନ୍ଧି ଦ୍ରୌପଦୀଙ୍କ ନିକଟକୁ ଆଣିବା ପରେ ଦ୍ରୌପଦୀ କହିଲେ—ଯେଉଁ ଗୁରୁଙ୍କ କୃପାରୁ ଆପଣ ଅସ୍ତ୍ରଶସ୍ତ୍ର ବିଦ୍ୟା ଲାଭ କଲେ, ସେହି ଆଚାର୍ଯ୍ୟ ଦ୍ରୋଣ ହିଁ ପୁତ୍ର ଅଶ୍ୱତ୍ଥାମା ରୂପରେ ଆପଣଙ୍କ ସମୀପରେ ଦଣ୍ଡାୟମାନ—'ସ ଏଷ ଭଗବାନ୍ ଦ୍ରୋଣଃ ପ୍ରଜାରୂପେଣ ବର୍ତ୍ତତେ' । (ଶ୍ରୀମଦ୍‌ଭାଗବତ ୧ । ୭ । ୪୫)

ଯେପରି ଭରତଙ୍କୁ ସ୍ନେହ କରୁଥିଲେ ଓ ଆଦରରେ ବୁଝାଉଥିଲେ, ତୁମେ ସେହିପରି ଛୋଟ ଭାଇ-ଭଉଣୀଙ୍କୁ ସ୍ନେହ କରିବ, ଖେଳାଇବ । ସେମାନଙ୍କ ସହିତ କଳି କରିବ ନାହିଁ । ମତାନ୍ତର ହେଲେ ଅନ୍ୟର କଥା ଶୁଣିବ, ନିଜର ଜିଦ୍ ରକ୍ଷା କରିବାକୁ ଚେଷ୍ଟା କରିବ ନାହିଁ । ଭଲ ଭଲ କାମ କରିବ । ସମୟ ବୃଥାରେ ନଷ୍ଟ କରିବ ନାହିଁ । ଅନ୍ୟର ଅଧିକାରକୁ ଛିନ୍ନ କରିବ ନାହିଁ । ପ୍ରତ୍ୟେକ ଜିନିଷକୁ ଉତ୍ତମ କାର୍ଯ୍ୟରେ ବିନିଯୋଗ କରିବ ଇତ୍ୟାଦି ।'' ଦିନରେ ଦୁଇ ତିନି ଥର ପିଲାମାନଙ୍କୁ ଏପରି ଉପଦେଶ ଦେଲେ ଧୀରେ ଧୀରେ ସେମାନଙ୍କ ଠାରେ ଉତ୍ତମ ସଂସ୍କାର ଜାତ ହେବ । ମୋଟ ଉପରେ ପିଲାମାନଙ୍କୁ ଭଲ ଆଚରଣ ନିଜେ କରି ଦେଖାଇବା ଉଚିତ ଏବଂ ଭଲ ଶିକ୍ଷା ଦେବା ଉଚିତ । ମାତାପିତା ଗୀତାର ନିମ୍ନ ବଚନକୁ ବିଗ୍ଚର କରିବା ଉଚିତ—

**ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ ତ୍ରିଷୁ ଲୋକେଷୁ କିଞ୍ଚନ ।**
**ନାନବାପ୍ତମବାପ୍ତବ୍ୟଂ ବର୍ତ୍ତ ଏବ ଚ କର୍ମଣି ॥**
**ଯଦି ହ୍ୟହଂ ନ ବର୍ତ୍ତେୟଂ ଜାତୁ କର୍ମଣ୍ୟତନ୍ଦ୍ରିତଃ ।**
**ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ॥**
**ଉତ୍ସୀଦେୟୁରିମେ ଲୋକା ନ କୁର୍ଯ୍ୟାଂ କର୍ମ ଚେଦହମ୍ ।**
**ସଂକରସ୍ୟ ଚ କର୍ତ୍ତା ସ୍ୟାମୁପହନ୍ୟାମିମାଃ ପ୍ରଜାଃ ॥**

(ଗୀତା ୩ । ୨୨—୨୪)

''ହେ ପାର୍ଥ ତିନିଲୋକରେ ମୋର କୌଣସି କର୍ତ୍ତବ୍ୟ ନାହିଁ କି କୌଣସି ବସ୍ତୁ ମୋତେ ଅପ୍ରାପ୍ତ ନୁହେଁ । ତଥାପି ମୁଁ କର୍ତ୍ତବ୍ୟକର୍ମରେ ଲାଗି ରହିଛି । ଯଦି କୌଣସି ସମୟରେ ବି ସଜାଗ ହୋଇ କର୍ତ୍ତବ୍ୟକର୍ମ କରିବି ନାହିଁ, ତେବେ ବଡ଼ ଅନିଷ୍ଟ ହୋଇଯିବ; କାରଣ ମନୁଷ୍ୟମାନେ ମୋର ମାର୍ଗକୁ ଅନୁସରଣ କରନ୍ତି । ମୁଁ କର୍ମ ନ କଲେ ସମସ୍ତ ମନୁଷ୍ୟ ନଷ୍ଟଭ୍ରଷ୍ଟ ହୋଇଯିବେ । ମୁଁ ସେମାନଙ୍କ ସଂକରତା ଓ ବିନାଶର କାରଣ ହୋଇଯିବି ।''

**ପ୍ରଶ୍ନ**—ଆଜିକାଲି ବିଦ୍ୟାଳୟଗୁଡ଼ିକରେ ଉତ୍ତମ ବାତାବରଣ ନାହିଁ । ତେଣୁ ବାଳକବାଳିକାଙ୍କ ଶିକ୍ଷା ପାଇଁ କ'ଣ କରିବା ଉଚିତ?

**ଉତ୍ତର**—ସେମାନଙ୍କୁ ପିତାମାତା ଗୃହରେ ଶିକ୍ଷା ଦେବେ । ସେମାନଙ୍କୁ ଏଭଳି କାହାଣୀ ଶୁଣାଇବେ, ଯେଉଁଥିରେ ପିତା-ମାତାଙ୍କର ଆଜ୍ଞା ପାଳନ କରିଥିବା ପିଲା ତା' ଜୀବନରେ ଉନ୍ନତି କରିଥିବା ବିଷୟ ଓ ଅବଜ୍ଞା କରିଥିବା ପିଲାର ଜୀବନ ଖରାପ ହୋଇଥିବା ବିଷୟ ବର୍ଣ୍ଣନା ଥିବ । ପଢ଼ି ଜାଣିଲେ ପିଲାକୁ ଭକ୍ତ-ଚରିତ୍ର

ପଢ଼ିବାକୁ ଦେବେ । ତାକୁ ଉପଦେଶ ଦେଇ କହିବେ—"ପୁଅ! ପାଠପଢ଼ା ସରିଲେ ଘରକୁ ଫେରି ଆସିବ । ଦୁଷ୍ଟ ପିଲାଙ୍କ ସହିତ ସାଙ୍ଗ ହେବ ନାହିଁ । ଅଧିକ କଥାବାର୍ତ୍ତା କରିବ ନାହିଁ । ବଜାରରୁ କୌଣସି ପଦାର୍ଥ କିଣି ଖାଇବ ନାହିଁ । ମାଆ ପ୍ରସ୍ତୁତ କରିଥିବା ଖାଦ୍ୟ ଖାଇବ । ଦୋକାନୀ ପଇସାଲୋଭରେ ଅଖାଦ୍ୟ ବିକ୍ରି କରେ । ବାଲ୍ୟକାଳରେ ସେସବୁ ଜୀର୍ଣ୍ଣ ହୋଇପାରେ, ପରନ୍ତୁ ପରେ ତାହାର ମନ୍ଦ ଫଳ ଭୋଗିବାକୁ ହୁଏ ।"

ଗୃହସ୍ଥ ଧନାର୍ଜନ ଅପେକ୍ଷା ସନ୍ତାନମାନଙ୍କ ଚରିତ୍ର ନିର୍ମାଣ ପାଇଁ ବିଶେଷ ଧ୍ୟାନ ଦେବା ଆବଶ୍ୟକ । ସେମାନେ ଦୁଶ୍ଚରିତ୍ର ହେଲେ ଧନରୁ କି ଫଳ ମିଳିବ । ବରଂ ଧନ ଯୋଗୁଁ ସେମାନେ ବେଶୀ ଖରାପ ହୋଇଯିବେ । ତେଣୁ କୁହାଯାଇଛି— ***'ପୁତ୍ର ଯଦି ସୁପୁତ୍ର ହୁଏ ଧନ କାହିଁ ପାଇଁ ସଞ୍ଚ, ପୁତ୍ର ଯଦି କୁପୁତ୍ର ହୁଏ ଧନ କାହିଁ ପାଇଁ ସଞ୍ଚ?*** ସୁପୁତ୍ର ଆପେ ଆପେ ଧନ ଅର୍ଜନ କରିବ । କୁପୁତ୍ର ସଞ୍ଚିତ ଧନକୁ ନଷ୍ଟ କରିଦେବ ।

**ପ୍ରଶ୍ନ**—ବାଳକ ବାଳିକାମାନଙ୍କୁ ଖ୍ରୀଷ୍ଟିଆନ ବିଦ୍ୟାଳୟମାନଙ୍କରେ ପ୍ରବେଶ କରାଇବା ଉଚିତ କି?

**ଉତ୍ତର**—ଖ୍ରୀଷ୍ଟିଆନ ବିଦ୍ୟାଳୟରେ ପଢ଼ାଇଲେ ପିଲାମାନେ ବାହାରେ ତ ହିନ୍ଦୁ ହୋଇ ରହିବେ, କିନ୍ତୁ ଭିତରେ ଖ୍ରୀଷ୍ଟିଆନ ପାଲଟିଯିବେ । ଏହା ଲଜ୍ଜାର ବିଷୟ ଯେ ସହସ୍ର ସହସ୍ର ମାଇଲ ଦୂରରୁ ଆସି ଲୋକେ ଆମ ବାଳକ ବାଳିକାଙ୍କୁ ଖ୍ରୀଷ୍ଟିଆନ କରି ଦେଉଛନ୍ତି, ଅଥଚ ଆମେ ନିଜର ପିଲାମାନଙ୍କୁ ହିନ୍ଦୁ କରି ରଖିପାରୁ ନାହୁଁ । ବାଳକ ବାଳିକା ଆମ ଦେଶର ସମ୍ପତ୍ତି । ସେମାନଙ୍କୁ ରକ୍ଷା କରନ୍ତୁ ।

ସମାଜର ତଥାକଥିତ ମୁଖ୍ୟ ବ୍ୟକ୍ତିମାନେ ଭାରତୀୟ ପରମ୍ପରାରେ ବିଦ୍ୟାଳୟ ସ୍ଥାପନ କରନ୍ତୁ । ସେଠାରେ ଯୋଗ୍ୟ ଅନୁଶାସନ ଓ ଉତ୍ତମ ଶିକ୍ଷାଦାନର ବ୍ୟବସ୍ଥା ରହୁ । ଉତ୍ତମ ଆଚରଣସମ୍ପନ୍ନ ଅଧ୍ୟାପକ ମିଳିବା ଯଦିବା କଷ୍ଟକର, ତଥାପି ସେଥିପାଇଁ ଯତ୍ନ କଲେ ମିଳିଯିବେ । ପ୍ରତିଦିନ ଘଣ୍ଟାଏ ଲେଖାଏଁ ଅନିବାର୍ଯ୍ୟ ଭାବରେ ଗୀତା, ରାମାୟଣ ଆଦି ସତ୍‌ଶାସ୍ତ୍ର ଶିକ୍ଷା ଦିଆଯାଉ ।

ପିତାମାତା ସରଳ ଜୀବନଯାପନ କଲେ ସନ୍ତାନମାନେ ତାହା ଅନୁକରଣ କରିବେ । ସେମାନେ ବିଳାସିତା ଓ ଆରାମ ତ୍ୟାଗ କଲେ ପିଲାଙ୍କ ଉପରେ ତାହାର ପ୍ରଭାବ ପଡ଼େ । ଘରେ ମନ୍ଦିର ରହୁ, ପୂଜାପାଠ ହେଉ । ଛୋଟ-ବଡ଼ ସମସ୍ତେ ଠାକୁରଙ୍କ ଚରଣାମୃତ ପାଆନ୍ତୁ । ଘରେ ଧର୍ମଚର୍ଚ୍ଚା, ନାମସଂକୀର୍ତ୍ତନ ଓ ଭଜନଗାନ ହେଉ । ବଚନ ଅପେକ୍ଷା ଆଚରଣ ଅଧିକ ପ୍ରଭାବଶାଳୀ । ତେଣୁ ପିତାମାତା ଆଚରଣନିଷ୍ଠ ହୁଅନ୍ତୁ ।

**ପ୍ରଶ୍ନ**—ପୁତ୍ରକନ୍ୟାଙ୍କ ବିବାହ ପାଇଁ ମାତାପିତା କ'ଣ କରିବେ?

**ଉତ୍ତର**—ପ୍ରକୃତ ପକ୍ଷରେ ନିଜ ନିଜ କର୍ମ ଅନୁସାରେ ପୁତ୍ରକନ୍ୟାଙ୍କୁ ଫଳ ମିଳିବ। ପରନ୍ତୁ ବୋହୂ ବାଛିବାବେଳେ ଯେତେ ଦୂର ସମ୍ଭବ ତାହାର ସ୍ୱଭାବ ଦେଖିବା ପିତାମାତାଙ୍କର କର୍ତ୍ତବ୍ୟ; କାରଣ ଜୀବନ ସାରା ତା'ସହିତ ଚଳିବାକୁ ପଡ଼ିବ। ତା'ଦେହରେ କୌଣସି ମାରାତ୍ମକ ରୋଗ ନ ଥିବା ଉଚିତ। ତା'ର ମାଆଙ୍କର ବ୍ୟବହାର ମଧ୍ୟ ଅନୁସନ୍ଧାନ କରିବା ଉଚିତ। କନ୍ୟାର ବିବାହ ପାଇଁ ବର, ଘର, ଯୋଗ୍ୟତା ଆଦି ଦେଖି କନ୍ୟା ଦେବା ଉଚିତ। କୁହାଯାଇଛି—

**କୁଳଂ ଚ ଶୀଳଂ ଚ ବପୁର୍ଯଶଶ୍ଚ ବିଦ୍ୟାଂ ଚ ବିତ୍ତଂ ଚ ସନାଥତାଂ ଚ।**
**ଏତାନ୍ ଗୁଣାନ୍ ସପ୍ତ ପରୀକ୍ଷ୍ୟ ଦେୟା କନ୍ୟା ବୁଧୈଃ ଶେଷମଚିନ୍ତନୀୟମ୍॥**

ଅର୍ଥାତ୍ ବରର କୁଳ, ସ୍ୱଭାବ, ଶରୀର, ଯଶ, ବିଦ୍ୟା, ଧନ ଓ ସନାଥତା (ବଡ଼ଲୋକଙ୍କ ସାହାଯ୍ୟ)—ଏହି ସାତଟି ଗୁଣ ଦେଖି କନ୍ୟା ଦେବା ଉଚିତ।

ଯେଉଁଠାରେ ବର ଓ ବରର ମାତା ଉତ୍ତମ ସ୍ୱଭାବଯୁକ୍ତ, ସେଠାରେ କନ୍ୟା ସୁଖରେ ରହେ। ବରଘର ଅତି ନିକଟରେ ବା ଅତି ଦୂରରେ ହେବା ଉଚିତ ନୁହେଁ। ପାଖରେ ହେଲେ କଳହ ହୁଏ ଓ ଦୂରରେ ହେଲେ ଦେଖାଗ୍ରହାଁ ଦୁଷ୍କର ହୁଏ*।

ସନ୍ତାନମାନେ ସୁଖରେ ରହନ୍ତୁ ଓ ବଂଶବୃଦ୍ଧି ହେଉ—ଏହି ଭାବନାରେ ସନ୍ତାନମାନଙ୍କୁ ବିବାହ କରାଇବା ଉଚିତ।

**ପ୍ରଶ୍ନ**—ଯୌତୁକ ନେବା ପାପ କି?

**ଉତ୍ତର**—ହଁ, ପାପ।

**ପ୍ରଶ୍ନ**—ତାହାହେଲେ ଶାସ୍ତ୍ରରେ ଯୌତୁକ ଦେବାର ବିଧାନ କାହିଁକି ରହିଛି?

**ଉତ୍ତର**—ଶାସ୍ତ୍ରରେ ଯୌତୁକ ଦେବାର ବିଧାନ ଅଛି, ନେବାର ବିଧାନ ନାହିଁ। ଯୌତୁକ ନେବା ଉଚିତ ନୁହେଁ। ନେବାର ଇଚ୍ଛା ଦୁଇ ପ୍ରକାରର। ପ୍ରଥମତଃ ଆମ ବସ୍ତୁ ଆମକୁ ମିଳୁ। ଏହା ନ୍ୟାୟଯୁକ୍ତ ହୋଇଥିଲେହେଁ ପ୍ରଭୁପ୍ରାପ୍ତି ପାଇଁ ଏପରି ଇଚ୍ଛା ମଧ୍ୟ ବାଧକ ଅଟେ। ଦ୍ୱିତୀୟତଃ ଅନ୍ୟର ବସ୍ତୁ ଆମକୁ ମିଳୁ—ଏହା

---

* କନ୍ୟା ପାଖରେ ଥିଲେ, ସେ ତାର ଦୁଃଖ ମାଆକୁ କହେ। ମାଆ ତାହା ସହି ନ ପାରି କନ୍ୟାର ଶାଶୁଙ୍କୁ କହିଦେଲେ ଶାଶୁଘରେ କଳହ ସୃଷ୍ଟି ହୁଏ। ତେଣୁ ଘରର ଛୋଟ ଛୋଟ କଥା କାହାକୁ କହିବା କନ୍ୟାପକ୍ଷେ ଉଚିତ ହେବ ନାହିଁ। ନଚେତ୍ ନିଜର ଅସାବଧାନତା ଯୋଗୁଁ ନିଜେ ବିପଦରେ ପଡ଼ିବ। ଯେଉଁଠି ତାକୁ ଜୀବନ ସାରା ରହିବାକୁ ହେବ, ସେଠାରେ ଅଶାନ୍ତି ବ୍ୟାପିଯିବ।

ଗ୍ରହିଁଲେ ନରକ ହିଁ ମିଳେ । ଯୌତୁକ ନେବାର ଇଚ୍ଛା ନରକଗାମୀ କରାଏ । ଯୌତୁକ ମିଳିବ, ନ ମିଳିବ, ବେଶୀ ବା କମ୍ ମିଳିବ—ଏହା ପ୍ରାରବ୍ଧ ଉପରେ ନିର୍ଭର କରେ । ଅନ୍ୟାୟପୂର୍ବକ ଅନ୍ୟର ଧନ ନେବାର ଇଚ୍ଛା ମନୁଷ୍ୟକୁ ନରକଗାମୀ କରାଏ । ତେଣୁ ମନୁଷ୍ୟଜନ୍ମ ପାଇ ପୁଣି ନରକ ଯିବା ଅପେକ୍ଷା ଅନ୍ୟର ଧନ ପ୍ରତି ଇଚ୍ଛା ତ୍ୟାଗ କରିବା ଶ୍ରେୟସ୍କର ।

ପ୍ରାରବ୍ଧ ଅନୁସାରେ ଧନ ମିଳେ, ଇଚ୍ଛା କଲେ ମିଳିଯାଏ ନାହିଁ । ତାହା ହୋଇଥିଲେ କେହି ନିର୍ଦ୍ଧନ ରହନ୍ତେ ନାହିଁ । ଧନର ଲାଳସା କେବେ କାହାରି ପୂର୍ଣ୍ଣ ହୋଇ ନାହିଁ, ହେବ ନାହିଁ କିଂବା ହୋଇ ପାରିବ ନାହିଁ । ତେଣୁ ତାକୁ ତ୍ୟାଗ କର । ଧନ ମିଳିବାକୁ ଥିଲେ ଇଚ୍ଛା ନ ଥିଲେ ମଧ୍ୟ ତାହା ସହଜରେ ମିଳେ । ଇଚ୍ଛା କଲେ ତାହା ପାପ ଓ ଅନ୍ୟାୟ ଦ୍ୱାରା ମିଳେ । ଗୀତାରେ ଅର୍ଜୁନ ପଗ୍ଚରିଥିଲେ—ମନୁଷ୍ୟ ନ ଗ୍ରହୁଁଥିଲେ ମଧ୍ୟ କାହିଁକି ପାପ କରେ? ଭଗବାନ ଉତ୍ତର ଦେଲେ—କାମନା ହିଁ ସବୁ ପାପର ମୂଳ (ଗୀତା ୩ । ୩୬ ଓ ୩୭) ।

ପୂର୍ବକାଳରେ ଶ୍ୱଶୁରଘରୁ ଆସିଥିବା ଯୌତୁକ ବାହାରେ ବାଣ୍ଟି ଦିଆଯାଉଥିଲା, ଘରେ ରଖାଯାଉ ନ ଥିଲା । ଅନ୍ୟର କନ୍ୟା ଦାନରେ ମିଳିଥାଏ; ତେଣୁ ଯଜ୍ଞ, ଦାନ, ବ୍ରାହ୍ମଣଭୋଜନ ଆଦି ଦ୍ୱାରା ତାହାର ପ୍ରାୟଶ୍ଚିତ୍ତ କରାଯାଉଥିଲା । ଅନ୍ୟର କନ୍ୟାକୁ ଦାନରେ ଗ୍ରହଣ କରିବା ଋଣ ଅଟେ । ମାତ୍ର ଗୃହସ୍ଥାଶ୍ରମରେ କନ୍ୟାଦାନ ଗ୍ରହଣ କରିବାକୁ ପଡୁଥିବାରୁ ଲୋକେ ଭାବୁଥିଲେ, ‘‘ଆମ ଘରେ କନ୍ୟା ଜନ୍ମ ହେଉ, ଆମେ ମଧ୍ୟ କନ୍ୟାଦାନ କରିବୁ’’ ।

ଯେଉଁ ବ୍ରାହ୍ମଣମାନେ ଗୋଦାନ ଗ୍ରହଣ କରୁଥିଲେ, ସେମାନେ ଯଜ୍ଞ, ଗାୟତ୍ରୀ ଜପ ପ୍ରଭୃତି ଦ୍ୱାରା ପ୍ରାୟଶ୍ଚିତ୍ତ କରୁଥିଲେ । ଅନ୍ୟର ଧନ ନେବା ଯେବେ ଦୋଷ, ତେବେ ଯୌତୁକରେ ଧନ ନେବା ତ ମହାଦୋଷ । ଯଦି ଯୌତୁକ ନେବାକୁ ପଡ଼େ, ତା’ହେଲେ ଦାତାର ପ୍ରସନ୍ନତା ପାଇଁ ନିଆଯାଇ ପାରେ । ନେବାର ଇଚ୍ଛା ନ ଥିବାରୁ ଏପରି ନେବା ଦେବା ସଙ୍ଗେ ସମାନ ।



# (୪) ସନ୍ତାନର କର୍ତ୍ତବ୍ୟ

**ମାତା ଚ କମଳା ଦେବୀ ପିତା ଦେବୋ ଜନାର୍ଦ୍ଦନଃ ।**
**ବାନ୍ଧବା ବିଷ୍ଣୁଭକ୍ତାଶ୍ଚ ସ୍ୱଦେଶୋ ଭୁବନତ୍ରୟମ୍ ॥**

ଲକ୍ଷ୍ମୀ ଓ ନାରାୟଣ ହିଁ ପ୍ରକୃତରେ ସମସ୍ତଙ୍କର ମାତା ଓ ପିତା । ଏହି ଦୃଷ୍ଟିରୁ

ସଂସାରରେ ଯେଉଁମାନେ ଆମର ମାତା ଓ ପିତା, ସେମାନେ ସାକ୍ଷାତ୍ ଲକ୍ଷ୍ମୀନାରାୟଣଙ୍କର ହିଁ ସ୍ୱରୂପ। ଏଣୁ ପିତାମାତାଙ୍କ ସେବାରେ ନିଜକୁ ନିୟୋଜିତ କରିବା ପୁତ୍ରର କର୍ତ୍ତବ୍ୟ। ଶରୀର ପିତାମାତାଙ୍କ ଠାରୁ ଉତ୍ପନ୍ନ ହୋଇଥିବାରୁ, ଶରୀରକୁ ନିଜର ବୋଲି ନ ଭାବି ପିତାମାତାଙ୍କର ବୋଲି ଯେଉଁ ପୁତ୍ର ଭାବିଥାଏ, ସେ ହିଁ ପ୍ରକୃତ ପୁତ୍ର। ସ୍ଥୂଳ, ସୂକ୍ଷ୍ମ ବା କାରଣ—ପ୍ରତ୍ୟେକ ଶରୀର ଉପରେ ସେ ନିଜର ଅଧିକାର ଥିବା କଥା ନ ଭାବି ବରଂ ସେଥିରେ ପିତାମାତାଙ୍କର ଅଧିକାର ଅଛି ବୋଲି ମନେକରିଥାଏ। ମନୁ ମଧ୍ୟ କହିଛନ୍ତି ଯେ ପୁତ୍ର ତୀର୍ଥ, ବ୍ରତ, ଭଜନ, ସ୍ମରଣ ଇତ୍ୟାଦି ଯେଉଁସବୁ ଶୁଭ କାର୍ଯ୍ୟ କରିବ, ସେସବୁକୁ ପିତାମାତାଙ୍କୁ ହିଁ ଅର୍ପଣ କରିବା ଉଚିତ।* ପିତାମାତା ଜୀବିତ ଥିଲେ ତତ୍ପରତାର ସହିତ ସେମାନଙ୍କର ଆଜ୍ଞା ପାଳନ କରିବା ତଥା ସେମାନଙ୍କ ଚିତ୍ତ ପ୍ରସନ୍ନ ରଖିବା ଉଚିତ। ସେମାନଙ୍କ ମୃତ୍ୟୁପରେ ସେମାନଙ୍କୁ ପିଣ୍ଡ ଦେବା ତଥା ଶ୍ରାଦ୍ଧ ଓ ତର୍ପଣ କରିବା ଉଚିତ। ସେମାନଙ୍କ ନାମରେ ତୀର୍ଥ, ବ୍ରତ ପ୍ରଭୃତି ମଧ୍ୟ କରଣୀୟ। ଏପରି କଲେ ସେମାନଙ୍କର ଆଶୀର୍ବାଦ ମିଳିଥାଏ, ଫଳରେ ଇହଲୋକ ଓ ପରଲୋକ ଉଭୟ ସୁଧୁରିଯାଏ।

ଭୀଷ୍ମ ତାଙ୍କ ପିତାଙ୍କର ସୁଖସୁବିଧା ତଥା ପ୍ରସନ୍ନତା ପାଇଁ ନିଜର ସୁଖସୁବିଧା ପରିତ୍ୟାଗ କରିଥିଲେ। ସେ ଆବାଲବ୍ରହ୍ମଚାରୀ ରହିବା ପାଇଁ ପ୍ରତିଜ୍ଞା କରିଥିଲେ। ସେ କନକ ଓ କାମିନୀ ତ୍ୟାଗ କରିଥିଲେ। ଏଥିରେ ପ୍ରସନ୍ନ ହୋଇ ପିତା ତାଙ୍କୁ ଇଚ୍ଛାମୃତ୍ୟୁର ବର ଦେଇଥିଲେ ଯେ ସେ ଯେତେବେଳେ ଚାହିଁବେ, ସେତେବେଳେ ତାଙ୍କର ମୃତ୍ୟୁ ହେବ। ପିତାଙ୍କ ସେବା କରିଥିବା ଯୋଗୁଁ ତାଙ୍କୁ ଏପରି ସାମର୍ଥ୍ୟ ମିଳିଥିଲା। ଶ୍ରୀରାମ ପିତୃଆଜ୍ଞା ପାଳନନିମିତ୍ତ ରାଜ୍ୟ, ବୈଭବ, ସୁଖ, ସୁବିଧା ସବୁକିଛି ପରିତ୍ୟାଗ କରିଥିଲେ। ବାଲ୍ମୀକି ରାମାୟଣରେ ଶ୍ରୀରାମ ନିଜେ କହିଛନ୍ତି, "ପିତାଙ୍କ ନିର୍ଦ୍ଦେଶରେ ମୁଁ ଅଗ୍ନିରେ ମଧ୍ୟ ପ୍ରବେଶ କରି ପାରିବି, ବିଷ ମଧ୍ୟ ଭକ୍ଷଣ କରି ପାରିବି ଏବଂ ସମୁଦ୍ରକୁ ମଧ୍ୟ ଡେଇଁ ପାରିବି, କିନ୍ତୁ ତାଙ୍କର ଆଜ୍ଞା ଅବଜ୍ଞା କରି ପାରିବି ନାହିଁ।"ψ ପ୍ରଭୁ ଶ୍ରୀରାମ ପିତୃଆଜ୍ଞା ଉପରେ କିଛି ବିଚାର

---

* ତେଷାମନୁପରୋଧେନ ପାରତ୍ର୍ୟଂ ଯଦ୍ ଯଦାଚରେତ୍।
ତତ୍ତନ୍ନିବେଦୟେତ୍ତେଭ୍ୟୋ ମନୋବଚନକର୍ମଭିଃ॥ (ମନୁସ୍ମୃତି ୨।୨୩୬)

ψ ଅହଂ ହି ବଚନାଦ୍ ରାଜ୍ଞଃ ପତେୟମପି ପାବକେ।
ଭକ୍ଷୟେୟଂ ବିଷଂ ତୀକ୍ଷ୍ଣଂ ପତେୟମପି ଚାର୍ଣ୍ଣବେ॥
(ବାଲ୍ମୀକି. ଅଯୋଧ୍ୟା. ୧୮।୨୮ ଓ ୨୯)

କରୁ ନ ଥିଲେ । ସେ ଆଜ୍ଞାପାଳକ ମାତ୍ର ଥିଲେ । ପିତା କ'ଣ କହିଛନ୍ତି, କେଉଁଠାରେ କହିଛନ୍ତି, କେତେବେଳେ କହିଛନ୍ତି, କେଉଁ ଅବସ୍ଥାରେ କହିଛନ୍ତି, କେଉଁ ପରିସ୍ଥିତିରେ କହିଛନ୍ତି ଇତ୍ୟାଦି ବିଷୟରେ ବିଗ୍ଚର ନ କରି ସେ ପିତୃଆଜ୍ଞା ପାଳନ କରି ବଣକୁ ଗ୍ଲିଗଲେ । ଏଣୁ ପିତାମାତାଙ୍କ ଆଜ୍ଞା ପାଳନ କରିବାରେ ଶ୍ରୀରାମ ସମସ୍ତଙ୍କର ଆଦର୍ଶ ହୋଇଗଲେ । ଗୋସ୍ୱାମୀ ତୁଳସୀଦାସ ଲେଖିଛନ୍ତି—

**ଅନୁଚିତ ଉଚିତ ବିଗ୍ଚରୁ ତଜି ଜେ ପାଲହିଁ ପିତୁ ବୈନ ।**
**ତେ ଭାଜନ ସୁଖ ସୁଜସ କେ ବସହିଁ ଅମରପତି ଐନ ॥**

କହିବାର ତାତ୍ପର୍ଯ୍ୟ ହେଉଛି, ପୁତ୍ର ପକ୍ଷେ ଶ୍ରୀରାମଙ୍କ ଭଳି ଆଚରଣ କରିବା ଉଚିତ । ସେ ଭାବିବା ଉଚିତ ଯେ ଏହି ପରିସ୍ଥିତିରେ, ଏହି ଅବସ୍ଥାରେ, ଏହି ସମୟରେ ମୋ ସ୍ଥାନରେ ଶ୍ରୀରାମ ଥିଲେ କ'ଣ କରିଥାନ୍ତେ? ଏହିଭଳି ତାଙ୍କୁ ଧ୍ୟାନ କରି କାମ କରିବା ଉଚିତ ।

ପୁତ୍ର ପିତାମାତାଙ୍କର ଯେତେ ସେବା କଲେ ବି ସେମାନଙ୍କର ଋଣ ପରିଶୋଧ କରି ପାରିବ ନାହିଁ । କାରଣ ଯେଉଁ ମନୁଷ୍ୟଶରୀର ଦ୍ୱାରା ଆତ୍ମକଲ୍ୟାଣ ସମ୍ଭବ ହୋଇପାରିବ, ଜୀବନ୍ମୁକ୍ତି ମିଳିପାରିବ, ଭଗବତ୍‌ପ୍ରେମ ପ୍ରାପ୍ତ ହୋଇ ପାରିବ, ବ୍ୟକ୍ତି ଭଗବାନଙ୍କ ମୁକୁଟମଣି ହୋଇ ପାରିବା ଭଳି ଉଚ୍ଚ ପଦ ପାଇପାରିବ, ସେହି ଶରୀର ତାକୁ ପିତାମାତା ପ୍ରଦାନ କରିଛନ୍ତି, ପୁତ୍ର ତାହା କିପରି ପରିଶୋଧ କରିପାରିବ? ଆଦୌ ପାରିବ ନାହିଁ ।

**ପ୍ରଶ୍ନ**—ପିତାମାତାଙ୍କ ସେବାର ତାତ୍ପର୍ଯ୍ୟ କ'ଣ?

**ଉତ୍ତର**—ପିତାମାତାଙ୍କ ସେବାର ତାତ୍ପର୍ଯ୍ୟ ହେଲା କୃତଜ୍ଞତା । ପିତାମାତା ପୁତ୍ର ପାଇଁ ଯେତେ କଷ୍ଟ ସହନ୍ତି, ତାହା ପୁତ୍ର ଉପରେ ଋଣ ହୋଇ ରହେ, ସେହି ଋଣ ପୁତ୍ର କେବେହେଲେ ପରିଶୋଧ କରି ପାରିବ ନାହିଁ । ମାଆ ପୁଅର ଯେତେ ସେବା କରିଥାଏ, ସେତିକି ସେବା ପୁଅ କେବେ ମଧ୍ୟ କରି ପାରିବ ନାହିଁ । ଯଦି କୌଣସି ପୁଅ କହିବ ଯେ ମୁଁ ମୋ ଦେହର ଚମଡ଼ାରେ ମାଆଙ୍କ ପାଇଁ ଜୋତା ତିଆରି କରିଦେବି, ତେବେ ତାକୁ ପଚରାଯାଇ ପାରେ "ତୁମେ ଏ ଚମଡ଼ା କେଉଁଠାରୁ ଆଣିଲ? ଏହା ତ ମାଆଙ୍କର ଦାନ । ସେହି ଚମଡ଼ାରେ ମାଆଙ୍କ ପାଇଁ ଜୋତା ତିଆରି କରି କ'ଣ ବା ବଡ଼ କାମ କଲ? ଏହା କେବଳ ଦେବାର ଅଭିମାନ ଛଡ଼ା ଅନ୍ୟ କିଛି ନୁହେଁ ।" ଶରୀର ପିତାଙ୍କର ବି ଅଂଶ । ପିତାଙ୍କ ଉଦ୍ୟମରୁ ପୁତ୍ର ଲେଖାପଢ଼ା ଶିଖି ଯୋଗ୍ୟ ହୁଏ, ତାକୁ ଅନ୍ନବସ୍ତ୍ର ମିଳେ । ଏହି ଋଣ କିପରି ପରିଶୋଧ କରାଯାଇ ପାରିବ? ଅତଏବ ପିତାମାତାଙ୍କର କେବଳ ସେବା କରିବା

ଫଳରେ ଓ ସେମାନଙ୍କୁ ପ୍ରସନ୍ନ ରଖିବା ଫଳରେ ସେହି ଋଣ ପରିଶୋଧ ତ ହୋଇପାରେ ନାହିଁ, କିନ୍ତୁ ଛାଡ଼ ହୋଇଯାଏ ।

**ପ୍ରଶ୍ନ**—ମୋର ଏଭଳି ପୁତ୍ର ଜନ୍ମ ହେଉ, ତା'ର ଉଦ୍ଧାର ହେଉ—ଏହି ଉଦ୍ଦେଶ୍ୟ ନେଇ ପିତାମାତା କଣ ସଂସର୍ଗ କରିଥାନ୍ତି! ସେମାନେ ତ ନିଜ ସୁଖ ପାଇଁ ସଂସର୍ଗ କରିବା ଫଳରେ ସନ୍ତାନ ଜନ୍ମ ହୁଅନ୍ତି । ତେବେ ସନ୍ତାନ ଉପରେ ଋଣ କିପରି ହୋଇଯିବ?

**ଉତ୍ତର**—କେବଳ ସୁଖାସକ୍ତି ପାଇଁ ସଂସର୍ଗ କରିଥିବା ସ୍ତ୍ରୀ-ପୁରୁଷଙ୍କ ଠାରୁ ପ୍ରାୟତଃ ଶ୍ରେଷ୍ଠ ପୁତ୍ର ଉତ୍ପନ୍ନ ହୋଇ ନ ଥାନ୍ତି । ଯେଉଁ ସ୍ତ୍ରୀ-ପୁରୁଷ ଶାସ୍ତ୍ରର ଆଜ୍ଞାନୁସାରେ କେବଳ ପିତୃଋଣରୁ ମୁକ୍ତ ହେବା ପାଇଁ ସନ୍ତାନ ଉତ୍ପନ୍ନ କରିଥାଆନ୍ତି, ନିଜ ସୁଖଭୋଗର ଉଦ୍ଦେଶ୍ୟ ରଖି ନ ଥାନ୍ତି, ସେମାନେ ହିଁ ପ୍ରକୃତ ପିତାମାତା । ପିତାମାତା ଯେଉଁଭଳି ହୁଅନ୍ତୁ ନା କାହିଁକି, ପୁତ୍ର ପାଇଁ ସେମାନେ ପୂଜ୍ୟ; କାରଣ ସେମାନେ ପୁତ୍ରକୁ ମାନବଶରୀର ପ୍ରଦାନ କରି ପରମାତ୍ମପ୍ରାପ୍ତି ପାଇଁ ଅଧିକାରୀ କରାଇଛନ୍ତି । ଉପନିଷଦ୍‌ମାନଙ୍କରେ କୁହାଯାଇଛି ଯେ ବିଦ୍ୟାର୍ଥୀ ବିଦ୍ୟା ଅଧ୍ୟୟନ ସମାପ୍ତ କରି ସ୍ନାତକ ହୋଇ ଗୃହସ୍ଥାଶ୍ରମରେ ପ୍ରବେଶ କରିବା ପାଇଁ ଗୁରୁଙ୍କ ଠାରୁ ଆଜ୍ଞା ନେବା ସମୟରେ ଗୁରୁ ତାଙ୍କୁ ଆଜ୍ଞା ଦେଉଥିଲେ—**'ମାତୃଦେବୋ ଭବ, ପିତୃଦେବୋ ଭବ'**, ଅର୍ଥାତ୍ ତୁମେ ପିତାମାତାଙ୍କୁ ସାକ୍ଷାତ୍ ଈଶ୍ୱରସ୍ୱରୂପ ମନେକରି ସେମାନଙ୍କ ଆଜ୍ଞା ପାଳନ କର, ସେମାନଙ୍କ ସେବା କର । ଏହା ଋଷିମାନଙ୍କର ଦୀକ୍ଷାନ୍ତ ଶିକ୍ଷା ଓ ଏହାକୁ ପାଳନ କରିବାରେ ଆମର କଲ୍ୟାଣ ନିହିତ । ଏଣୁ ପୁତ୍ରକୁ ଯେଉଁମାନଙ୍କ ଯୋଗୁଁ ଶରୀର ମିଳିଛି, ସେମାନଙ୍କ ପ୍ରତି କୃତଜ୍ଞ ରହିବା ସର୍ବାଦୌ ବାଞ୍ଛନୀୟ ।

**ପ୍ରଶ୍ନ**—ଆମକୁ ଜନ୍ମ ଦେଇ ପିତାମାତା ସଂସାରବନ୍ଧନ ଭିତରେ ପକାଇ ଦେଇଛନ୍ତି । ବିପଦ ମଧ୍ୟକୁ ଠେଲି ଦେଇଛନ୍ତି । ଏସବୁ ସତ୍ତ୍ୱେ ଆମ ଉପରେ ସେମାନଙ୍କ ଋଣ କିପରି ରହିବ?

**ଉତ୍ତର**—ଏ କଥା ସମ୍ପୂର୍ଣ୍ଣ ଭ୍ରାନ୍ତ । ପିତାମାତା ପୁତ୍ରକୁ ମନୁଷ୍ୟଶରୀର ପ୍ରଦାନ କରି ସଂସାରବନ୍ଧନରୁ ଓ ଜନ୍ମମରଣ ଚକ୍ରରୁ ମୁକ୍ତି ପାଇବା ପାଇଁ ଏକ ମହାନ୍ ସୁଯୋଗ ଦେଇଛନ୍ତି । ପିତାମାତା ପୁତ୍ରକୁ ବନ୍ଧନ ମଧ୍ୟରେ ପକାଇ ନ ଥାନ୍ତି କିଂବା ପୁତ୍ରକୁ ବନ୍ଧନ ଓ ବିପଦରେ ପକାଇବାର ଉଦ୍ଦେଶ୍ୟ ମଧ୍ୟ ସେମାନଙ୍କର ନ ଥାଏ । ସେମାନେ ପ୍ରତ୍ୟେକ ଅବସ୍ଥାରେ ଜଣା-ଅଜଣାରେ ସର୍ବଦା ପୁତ୍ରର ମଙ୍ଗଳ ଚାହିଁଥାନ୍ତି ଓ ମଙ୍ଗଳ ମଧ୍ୟ କରିଥାନ୍ତି । ଆମେ କିନ୍ତୁ ପଦାର୍ଥ, ଭୋଗ, ପରିସ୍ଥିତି ଓ ଲୋକଙ୍କ

ପ୍ରତି ମମତା କରି ସେମାନଙ୍କ ଠାରୁ ସୁଖଭୋଗ କରିବାର ଇଚ୍ଛା ରଖି ବନ୍ଧନରେ ଓ ବିପଦରେ ପଡ଼ିଥାଉ । ନିଜ ସୁଖକାମନା, ସୁଖଭୋଗ ଓ ସୁଖର ଆଶା ପରିହାର କରି ଯଦି ପୁତ୍ର ପିତାମାତାଙ୍କ ସେବାକୁ ପରମାତ୍ମପ୍ରାପ୍ତିର ସାଧନା ମନେକରି ତତ୍ପରତାପୂର୍ବକ ସେମାନଙ୍କର ସେବା କରେ, ତେବେ ସେ ସଂସାରଠାରୁ ସମ୍ବନ୍ଧ ଛିନ୍ନ କରି ପରମାତ୍ମପ୍ରାପ୍ତି କରି ପାରିବ ।

ପିତାମାତାଙ୍କ କର୍ତ୍ତବ୍ୟ ଆଡ଼କୁ ପୁତ୍ର ଦୃଷ୍ଟି ଦେବା ଅନୁଚିତ । ସେ କେବଳ ନିଜର କର୍ତ୍ତବ୍ୟ ବିଷୟରେ ସଚେତନ ରହିବା ଉଚିତ । ଯେଉଁ ପୁତ୍ର ନିଜ କର୍ତ୍ତବ୍ୟ ପ୍ରତି ଧ୍ୟାନ ନ ଦେଇ ପିତାମାତାଙ୍କ କର୍ତ୍ତବ୍ୟ ପ୍ରତି ଧ୍ୟାନ ଦିଏ, ସେ ନିଜେ କର୍ତ୍ତବ୍ୟଚ୍ୟୁତ ହୋଇଯାଏ । କୌଣସି ଶାସ୍ତ୍ରରେ ମଧ୍ୟ କାହାରିକୁ ପିତାମାତା ଓ ଗୁରୁଜନଙ୍କ କର୍ତ୍ତବ୍ୟ ଆଡ଼କୁ ଦୃଷ୍ଟି ଦେବାର ଅଧିକାର ଦିଆଯାଇ ନାହିଁ । ପୂର୍ବକାଳରେ ଲୋକେ ଅନ୍ୟର କର୍ତ୍ତବ୍ୟ ପ୍ରତି ଧ୍ୟାନ ନ ଦେଇ ନିଜ କର୍ତ୍ତବ୍ୟ ପ୍ରତି ଧ୍ୟାନ ଦେଉଥିଲେ ଓ ନିଜର କର୍ତ୍ତବ୍ୟ ସୁଚାରୁରୂପେ ପାଳନ କରୁଥିଲେ । ଏହାଦ୍ୱାରା ସେମାନେ ଜୀବନ୍ମୁକ୍ତ ଓ ଭଗବଦ୍‌ଭକ୍ତ ହେଉଥିଲେ । ଯଦି ସେମାନେ ଅନ୍ୟର କର୍ତ୍ତବ୍ୟ ପ୍ରତି ଓ ନିଜ ସ୍ୱାର୍ଥ ପ୍ରତି ଧ୍ୟାନ ଦେଇଥାନ୍ତେ, ତେବେ ସେମାନଙ୍କର ସମାଜ ଆଜିକାଲିର ମନୁଷ୍ୟ ସମାଜ ଭଳି ହୋଇଯାଇଥାନ୍ତା । ଯେଉଁମାନେ କେବଳ ନିଜର କର୍ତ୍ତବ୍ୟ ପ୍ରତି ଧ୍ୟାନ ଦେଇଛନ୍ତି ଏବଂ କର୍ତ୍ତବ୍ୟ ପାଳନ କରିଛନ୍ତି, ସେହି ସନ୍ତମହାତ୍ମା ଓ ଧର୍ମାତ୍ମାମାନଙ୍କୁ ଭାରତର ଜନସାଧାରଣ କେତେ ଶ୍ରଦ୍ଧା ଦୃଷ୍ଟିରେ ଦେଖନ୍ତି! ଏଣୁ ମନୁଷ୍ୟ କେବେହେଲେ ନିଜ କର୍ତ୍ତବ୍ୟ ପରିତ୍ୟାଗ କରିବା ଉଚିତ ନୁହେଁ ।

କର୍ତ୍ତବ୍ୟ ବିଷୟରେ ଗୋଟିଏ ମାର୍ମିକ କଥା ହେଉଛି, କର୍ତ୍ତବ୍ୟକୁ କେବଳ କର୍ତ୍ତବ୍ୟ ମନେକରି ପାଳନ କରିବା ଦ୍ୱାରା ସମ୍ବନ୍ଧ ଛିନ୍ନ ହୋଇଥାଏ । ଯେଉଁ ପୁତ୍ରମାନେ ପିତାମାତାଙ୍କ ସେବାକୁ କେବଳ ନିଜ କର୍ତ୍ତବ୍ୟ ମନେକରି କରିଥାନ୍ତି, ସେମାନଙ୍କର ପିତାମାତାଙ୍କ ଠାରୁ ସମ୍ବନ୍ଧ ଛିନ୍ନ ହୋଇଥାଏ । ସେମାନଙ୍କର ପିତାମାତାଙ୍କ ଚରଣରେ ପ୍ରେମଭାବ ନ ଥାଏ । କିନ୍ତୁ ଯେଉଁମାନେ ନିଜ ଶରୀରକୁ ପିତାମାତାଙ୍କର ଦାନ ମନେକରି ତତ୍ପରତାର ସହିତ, ଶ୍ରଦ୍ଧା ଓ ପ୍ରେମପୂର୍ବକ ସେମାନଙ୍କ ସେବା କରିଥାନ୍ତି, ସେମାନଙ୍କର ପିତାମାତାଙ୍କ ପ୍ରତି ପ୍ରେମଭାବ ଉତ୍ପନ୍ନ ହୋଇଥାଏ । ଅନ୍ନ ଓ ଜଳ ଗ୍ରହଣକୁ ନିଜର କର୍ତ୍ତବ୍ୟ ବୋଲି ନ ଭାବି ପ୍ରାଣର ଆଧାର ଭାବରେ ଯେପରି ଗ୍ରହଣ କରାଯାଏ, ସେହିପରି ପିତାମାତାଙ୍କ ସେବାକୁ ମଧ୍ୟ ପ୍ରାଣର ଆଧାର ଭାବେ ସ୍ୱୀକାର କରିବାକୁ ହେବ । ସେମାନଙ୍କ ସେବାକୁ ନିଜର ଜୀବନ ତଥା ନିଜର ମୁଖ୍ୟ କର୍ମ ବୋଲି ଭାବିବା ଉଚିତ—

**ସେଵହିଁ ଲଖନୁ ସୀୟ ରଘୁବୀରହି । ଜିମି ଅବିବେକୀ ପୁରୁଷ ସରୀରହି ॥**

(ମାନସ, ଅଯୋଧ୍ୟା. ୧୪୨ । ୧)

ଏହିଭଳି ଭାବରେ ପିତାମାତାଙ୍କ ସେବାକୁ ନିଜ ପ୍ରାଣର ଓ ଜୀବନର ଆଧାର ମନେକରି ସମ୍ପାଦନ କଲେ 'ମୁଁ' ଓ 'ମୋର' ଭାବ ନଷ୍ଟ ହୋଇଯାଏ । ଶରୀରକୁ ପିତାମାତାଙ୍କର ଦାନ ମନେକରି ତାହାକୁ ସେମାନଙ୍କ ସେବାରେ ଅର୍ପଣ କଲେ ଏବଂ ଶରୀର ଉପରେ ନିଜର କୌଣସି ଅଧିକାର ଥିବାର ନ ଭାବିଲେ ଅହଂଭାବ ଓ ମମତା ରହେ ନାହିଁ ।

**ପ୍ରଶ୍ନ**—ମନୁଷ୍ୟ ପିତାମାତାଙ୍କ ସେବାକୁ ଭଗବତ୍‌ପ୍ରାପ୍ତିର ସାଧନ ମନେକରେ, ସାଧ୍ୟ ନୁହେଁ । ଯଦି ସେ ପିତାମାତାଙ୍କ ସେବାକୁ ସାଧ୍ୟ ମନେକରିବ, ନିଜ ପ୍ରାଣର ଆଧାର ମନେକରିବ, ତେବେ ପିତାମାତାଙ୍କ ଚରଣରେ ହିଁ ତା'ର ପ୍ରେମଭାବ ଉତ୍ପନ୍ନ ହେବ । ପୁଣି ତାକୁ ଭଗବତ୍‌ପ୍ରେମ ଓ ଭଗବତ୍‌ପ୍ରାପ୍ତି କିପରି ହେବ?

**ଉତ୍ତର**—ଏଥିରେ ତିନୋଟି କଥା ଅଛି—(୧) ଯେଉଁ ବ୍ୟକ୍ତି ପିତାମାତାଙ୍କ ସେବାକୁ ହିଁ ସାଧନ ତଥା ସାଧ୍ୟ ମନେକରି ସେମାନଙ୍କ ସେବା କରେ, ସେମାନଙ୍କ ସେବାକୁ ନିଜ ପ୍ରାଣର ଆଧାର ମନେକରେ, ତା'ର ପିତାମାତାଙ୍କ ଚରଣରେ ପ୍ରେମଭାବ ଓ ଭକ୍ତିଭାବ ଉତ୍ପନ୍ନ ହୁଏ ଏବଂ ଶେଷରେ ତାକୁ ପିତୃଲୋକପ୍ରାପ୍ତି ହୁଏ । (୨) ଯେଉଁ ବ୍ୟକ୍ତି ପରମାତ୍ମପ୍ରାପ୍ତି ଉଦ୍ଦେଶ୍ୟ ରଖି ପିତାମାତାଙ୍କ ସେବାକୁ ନିଜର କର୍ତ୍ତବ୍ୟ ମନେକରି ସମ୍ପାଦନ କରେ, ତା'ର ପିତାମାତାଙ୍କ ଠାରୁ ସମ୍ବନ୍ଧ ଛିନ୍ନ ହୋଇ ପରମାତ୍ମପ୍ରାପ୍ତି ହୋଇଥାଏ । (୩) ଯେଉଁ ବ୍ୟକ୍ତି ପିତାମାତାଙ୍କୁ ସାକ୍ଷାତ୍ ଭଗବତ୍‌ସ୍ୱରୂପ ମନେକରି ସେମାନଙ୍କର ସେବା କରେ, ତାକୁ ଭଗବତ୍‌ପ୍ରାପ୍ତି ହୋଇଥାଏ । ଏହି ତିନିଗୋଟି ପ୍ରକ୍ରିୟା ମଧ୍ୟରୁ ଯାହାର ଯେଉଁଥିରେ ଇଚ୍ଛା, ସେ ସେହିପରି କରିବା ଉଚିତ ।

ଜଣେ ପତିବ୍ରତା ସ୍ତ୍ରୀ ଭଗବାନଙ୍କର, ଶାସ୍ତ୍ରମାନଙ୍କର ତଥା ମହାପୁରୁଷମାନଙ୍କର ଆଜ୍ଞାନୁସାରେ କାୟମନୋବାକ୍ୟରେ ପତିଙ୍କ ସେବା କଲେ ତାକୁ ପତିଲୋକ ପ୍ରାପ୍ତ ହୋଇଥାଏ ଅର୍ଥାତ୍ ପତିଙ୍କୁ ଯେଉଁ ଲୋକ ପ୍ରାପ୍ତ ହୁଏ, ପତିବ୍ରତାକୁ ମଧ୍ୟ ସେହି ଲୋକ ପ୍ରାପ୍ତ ହୋଇଥାଏ । କିନ୍ତୁ ଏହାର ଅର୍ଥ ନୁହେଁ ଯେ ପତି ଦୁରାଗ୍ରହୀ ହୋଇଥିବା ଯୋଗୁଁ ଯଦି ନରକଲୋକ ପ୍ରାପ୍ତ ହୁଏ, ତେବେ ପତିବ୍ରତା ମଧ୍ୟ ନରକକୁ ଯିବ । ଯେଉଁ ସ୍ତ୍ରୀ ପତିସେବାକୁ ଆପଣାର ଧର୍ମ (କର୍ତ୍ତବ୍ୟ) ମନେକରି ପାତିବ୍ରତ୍ୟ ଧାରଣ କରିଥାଏ, ସେ ନରକକୁ କିପରି ଯାଇପାରିବ? ଆଦୌ ନୁହେଁ । ପାତିବ୍ରତ୍ୟ ଧାରଣ କରିବା କାରଣରୁ ସେ ଯେଉଁ ଲୋକ ପ୍ରାପ୍ତ ହେବ, ତା'ର

ପତି ମଧ୍ୟ ସେହି ଲୋକ ପ୍ରାପ୍ତ ହେବ । କହିବାର ତାତ୍ପର୍ଯ୍ୟ ହେଉଛି, ପାତିବ୍ରତ୍ୟ ତପୋବଳରୁ ତା'ର ଓ ତା' ପତିର—ଉଭୟଙ୍କର କଲ୍ୟାଣ ହେବ । ସେହିଭଳି ଯେ ପିତାମାତାଙ୍କ ସେବାକୁ ସାଧନ ଓ ସାଧ୍ୟ ମନେକରି ସେମାନଙ୍କର ସେବା କରେ, ତାକୁ ଏବଂ ତା' ପିତାମାତାଙ୍କୁ ଭଗବତ୍‌ପ୍ରାପ୍ତି ହୋଇଥାଏ । କାରଣ ପୁତ୍ରକୁ ଯେଉଁ ଲୋକ ପ୍ରାପ୍ତ ହେବ, ପିତାମାତାଙ୍କୁ ମଧ୍ୟ ସେହି ଲୋକ ପ୍ରାପ୍ତ ହେବ ।

**ପ୍ରଶ୍ନ**—କୁହାଯାଇଛି ଯେ ଆମକୁ ଏହି ଶରୀର ଆପଣା କର୍ମ ଓ ଭାଗ୍ୟ ବଳରୁ ମିଳିଛି— ***'ବଡ଼େଁ ଭାଗ ମାନୁଷ ତନୁ ପାୱା';*** ଏବଂ ଭଗବାନ ବିଶେଷ କୃପା କରି ମନୁଷ୍ୟଶରୀର ପ୍ରଦାନ କରିଛନ୍ତି— ***'କବହୁଁକ କରି କରୁନା ନର ଦେହୀ । ଦେତ ଈସ ବିନୁ ହେତୁ ସନେହୀ ॥'*** ତା'ହେଲେ ଏହି ଶରୀର ପିତାମାତାଙ୍କ ଠାରୁ ମିଳିଛି ବୋଲି କହିବା କେତେଦୂର ଠିକ୍?

**ଉତ୍ତର**—ମନୁଷ୍ୟଶରୀର ମିଳିବା କ୍ଷେତ୍ରରେ ପ୍ରାରବ୍ଧ (କର୍ମ) ଏବଂ ଭଗବତ୍‌କୃପା ନିମିତ୍ତକାରଣ ଏବଂ ପିତାମାତା ଉପାଦାନକାରଣ । ଗୋଟିଏ ମାଠିଆ ତିଆରିରେ ମାଟି ହେଉଛି ଉପାଦାନକାରଣ ଓ ମାଠିଆ ତିଆରି କରିବାରେ ନିମିତ୍ତ ହୋଇଥିବାରୁ କୁମ୍ଭାର ହେଉଛି ନିମିତ୍ତକାରଣ । ଯାହା କାର୍ଯ୍ୟ-ରୂପରେ ପରିଣତ ହେବାରେ କାରଣ ହୁଏ, ତାହାକୁ ଉପାଦାନକାରଣ (ମୁଖ୍ୟ କାରଣ) କୁହାଯାଏ । ନିମିତ୍ତକାରଣ ଅନେକ ହୋଇ ପାରନ୍ତି; ଯଥା, ମାଠିଆ ତିଆରି କରିବା ପାଇଁ କୁମ୍ଭାର, କୁମ୍ଭାରଚକ, ପିଟଣା ଇତ୍ୟାଦି । ମାତ୍ର ଏଥିରେ କୁମ୍ଭାର ମୁଖ୍ୟ ନିମିତ୍ତକାରଣ । ସେହିଭଳି ମାତାପିତାଙ୍କ ରଜ ଓ ବୀର୍ଯ୍ୟରୁ ଶରୀର ନିର୍ମିତ ହୋଇଥିବା ହେତୁ ମାତାପିତା ଶରୀରର ମୁଖ୍ୟ ଉପାଦାନକାରଣ ।

ଜନ୍ମ ମିଳିବା ଓ ପରମାୟୁ ମିଳିବାରେ ତଥା ଅନୁକୂଳ ଓ ପ୍ରତିକୂଳ ପରିସ୍ଥିତି ଉପସ୍ଥିତ ହେବାରେ କର୍ମ ହେଉଛି ନିମିତ୍ତକାରଣ । କେଉଁ କର୍ମର କେବେ ଓ କେଉଁଠାରେ କ'ଣ ଫଳ ହେବ, ପରିସ୍ଥିତି କିପରି ହେବ—ଏହିପରି କର୍ମଫଳର ବ୍ୟବସ୍ଥା କରିବାରେ ଓ କର୍ମଫଳ ପ୍ରଦାନ କରିବାରେ ଭଗବତ୍‌କୃପା ହେଉଛି ନିମିତ୍ତକାରଣ । ଏ ସମସ୍ତ ଭଗବାନଙ୍କ ଇଚ୍ଛାରେ ଓ ଭଗବାନଙ୍କ ବିଧାନ ଦ୍ୱାରା ହୋଇଥାଏ; କାରଣ କର୍ମ ଜଡ଼ ହୋଇଥିବାରୁ ନିଜେ କର୍ମଫଳ ପ୍ରଦାନ କରିପାରେ ନାହିଁ । ଯଦି କର୍ମଫଳର ବିଧାନ ଜୀବମାନଙ୍କର ହାତରେ ଥାଆନ୍ତା, ତେବେ ସେମାନେ କେବଳ ଶୁଭକର୍ମର ଫଳ ନିଅନ୍ତେ, ଅଶୁଭ କର୍ମର ଫଳ କାହିଁକି ନିଅନ୍ତେ? ସାଧାରଣତଃ ସଂସାରରେ ଦେଖାଯାଏ ଯେ ମନୁଷ୍ୟ ଶୁଭକର୍ମର ଫଳ ସ୍ୱୟଂ ସ୍ୱୀକାର କରେ ଏବଂ ଅଶୁଭ କର୍ମ (ଚୋରି, ଡକାୟତି ଆଦି)ର ଫଳ (ଦଣ୍ଡ)

ସ୍ୱୟଂ ସ୍ୱୀକାର କରେ ନାହିଁ। ସେଥିପାଇଁ ରାଜକୀୟ ବ୍ୟବସ୍ଥା ଦ୍ୱାରା ତା' ପାଇଁ ଦଣ୍ଡ ବିଧାନ କରାଯାଏ।

ମା' ସନ୍ତାନ ପାଇଁ ଅନେକ କଷ୍ଟ ସହେ, ତାକୁ ଗର୍ଭରେ ଧାରଣ କରେ, ଜନ୍ମ ଦେବା ସମୟରେ ଅସହ୍ୟ ପୀଡ଼ା ସହନ କରେ, ନିଜର ସ୍ତନ୍ୟପାନ କରାଏ, ଅତି ଗେଲବସରରେ ପାଳିପୋଷି ବଡ଼ କରେ, ଖାଇବା ପିଇବା, ବସିବା ଉଠିବା, ଚାଲିବା ଦୌଡ଼ିବା ଆଦି ଶିଖାଏ। ଏଭଳି ମା'ର ଋଣ ପୁତ୍ର କେବେହେଲେ ପରିଶୋଧ କରି ପାରିବ ନାହିଁ। ଏଣୁ ପୁତ୍ର ମା' ପାଖରେ କୃତଜ୍ଞ ରହିବା ଉଚିତ। ଏହାଛଡ଼ା ପୁତ୍ର ନ କହିଲେ ମଧ୍ୟ ପିତା ତା'ର ଭରଣପୋଷଣ ପାଇଁ ସମସ୍ତ ବ୍ୟବସ୍ଥା କରନ୍ତି, ପାଠ ପଢ଼ାଇ ଯୋଗ୍ୟ କରନ୍ତି, ଜୀବିକା ଉପାର୍ଜନ କରାଯାଇପାରୁଥିବା ବିଦ୍ୟା ଶିଖାନ୍ତି, ବିବାହ କରାଇଥାନ୍ତି ଇତ୍ୟାଦି। ଏଭଳି ପିତାଙ୍କ ଋଣ ପରିଶୋଧ କରିବା ଆଦୌ ସମ୍ଭବ ନୁହେଁ। ଏଣୁ ପିତାମାତାଙ୍କ ପ୍ରତି କୃତଜ୍ଞ ରହି ଜୀବିତ ଅବସ୍ଥାରେ ସେମାନଙ୍କର ଆଜ୍ଞା ପାଳନ କରିବା, ସେମାନଙ୍କ ସେବା କରିବା, ସେମାନଙ୍କୁ ପ୍ରସନ୍ନ ରଖିବା ଏବଂ ସେମାନଙ୍କର ମୃତ୍ୟୁ ହୋଇଯିବାପରେ ସେମାନଙ୍କୁ ପିଣ୍ଡ ଦେବା, ଶ୍ରାଦ୍ଧ ଓ ତର୍ପଣ କରିବା ଇତ୍ୟାଦି ହେଉଛି ପୁତ୍ରର ମୁଖ୍ୟ କର୍ତ୍ତବ୍ୟ।

**ପ୍ରଶ୍ନ**—ପିତାମାତା ପୁତ୍ରକୁ ପିଲାଦିନୁ ଉପଯୁକ୍ତ ଶିକ୍ଷା ଦେଇ ନ ଥିବା ଯୋଗୁଁ ଯଦି ପୁତ୍ର ପିତାମାତାଙ୍କ ସେବା କରେ ନାହିଁ, ତେବେ ସେଥିରେ ପୁତ୍ରର ଦୋଷ କ'ଣ?

**ଉତ୍ତର**—ପିତାମାତା ପୁତ୍ରକୁ ଉପଯୁକ୍ତ ଶିକ୍ଷା ଦେଇ ନ ଥିଲେ ସେଥିପାଇଁ ସେମାନେ ଦୋଷୀ ହେବେ, କାରଣ ସେମାନେ ନିଜ କର୍ତ୍ତବ୍ୟ ଠିକ୍‌ଭାବେ ପାଳନ କରି ନାହାନ୍ତି। କିନ୍ତୁ ପିତା-ମାତାଙ୍କ ଦୋଷ ବାଛିବା ପୁତ୍ରର କର୍ତ୍ତବ୍ୟ ନୁହେଁ। ସେ ନିଜ କର୍ତ୍ତବ୍ୟ ପ୍ରତି ସଚେତନ ହେବା ଉଚିତ। ଅନ୍ୟର କର୍ତ୍ତବ୍ୟରେ ଦୋଷଗୁଣ ବାଛିଲେ ମନୁଷ୍ୟ ନିଜ କର୍ତ୍ତବ୍ୟରୁ ବିଚ୍ୟୁତ ହୋଇଯାଏ। ଅନ୍ୟର କର୍ତ୍ତବ୍ୟରେ ଦୋଷଗୁଣ ବାଛିବା ଗୋଟାଏ ଭୟାନକ ଦୋଷ। ଗୀତାରେ ମଧ୍ୟ ନିଜେ ନିଜର ଉଦ୍ଧାର କରିବା ଓ ନିଜକୁ ସଂଶୋଧିତ କରିବା କଥା କୁହାଯାଇଛି;* କାରଣ ଉପଯୁକ୍ତ ଓ ଉତ୍ତମ ଶିକ୍ଷା ମିଳିଲେ ମଧ୍ୟ ତାକୁ କାର୍ଯ୍ୟକାରୀ କରିବା ନିଜର କାମ।

* ଉଦ୍ଧରେଦାତ୍ମନାତ୍ମାନଂ ନାତ୍ମାନମବସାଦୟେତ୍।
ଆତ୍ମୈବ ହ୍ୟାତ୍ମନୋ ବନ୍ଧୁରାତ୍ମୈବ ରିପୁରାତ୍ମନଃ॥ (ଗୀତା ୬।୫)

"ନିଜେ ନିଜର ଉଦ୍ଧାର କର, ନିଜର ପତନ କର ନାହିଁ; କାରଣ ତୁମେ ନିଜେ ହିଁ ନିଜର ମିତ୍ର ଓ ନିଜେ ହିଁ ନିଜର ଶତ୍ରୁ।"

ଉପଯୁକ୍ତ ଶିକ୍ଷା ମିଳିବା ସତ୍ତ୍ୱେ ବାଳକ ତାକୁ କାର୍ଯ୍ୟକାରୀ ନ କଲେ, ଖରାପ ହୋଇଗଲେ ସେ ଦୋଷ ସେହି ବାଳକର। ତେଣୁ ନିଜର ଉଦ୍ଧାର ବା ପତନ ମୁଖ୍ୟତଃ ନିଜ ଉପରେ ନିର୍ଭର କରେ।

**ପ୍ରଶ୍ନ**—ଯଦି ପିତାମାତା ପୁତ୍ର ପ୍ରତି କଠୋର ବ୍ୟବହାର କରନ୍ତି, ପକ୍ଷପାତ କରନ୍ତି, ତେବେ ପୁତ୍ର କ'ଣ କରିବ?

**ଉତ୍ତର**—ପୁତ୍ର ପିତାମାତାଙ୍କର କର୍ତ୍ତବ୍ୟ ପ୍ରତି ଦୃଷ୍ଟି ନ ଦେଇ ନିଜ କର୍ତ୍ତବ୍ୟ ପ୍ରତି ଦୃଷ୍ଟି ଦେବ। ସେ ଉତ୍ସାହ ସହକାରେ ପିତାମାତାଙ୍କର ଭଲଭାବରେ ସେବା କରିବା ଉଚିତ। ରାମଚରିତମାନସରେ ସମସ୍ତଙ୍କ ପାଇଁ କୁହାଯାଇଛି— ***'ମଂଦ କରତ ଜୋ କରଇ ଭଲାଈ ॥'*** (୫।୪୧।୪)।

ପିତାମାତା ଯଦି ପୁତ୍ରକୁ ଆଦର କରନ୍ତି, ତେବେ ସେହି ଆଦର ବିନିମୟରେ ପୁତ୍ରର ସେବାତକ ଖର୍ଚ୍ଚ ହୋଇଯାଏ, ବିକି ହୋଇଯାଏ। କିନ୍ତୁ ସେମାନେ ଆଦର ନ କରି ପୁତ୍ରକୁ ନିରାଦର କଲେ ପୁତ୍ରର ସେବା ସମ୍ପୂର୍ଣ୍ଣ ଜମା ହୋଇ ରହେ, ଆଦୌ ଖର୍ଚ୍ଚ ହୋଇ ନ ଥାଏ। ସେମାନେ କଷ୍ଟ ଦେଲେ ପୁତ୍ରର ପାପକ୍ଷୟ ହୋଇଥାଏ, ସହନଶୀଳତା ବଢ଼େ, ତପ ବଢ଼େ, ମହତ୍ତ୍ୱ ବଢ଼େ। ଏଣୁ ପିତାମାତା ଦେଉଥିବା କଷ୍ଟକୁ ପରମ ତପ ମନେକରି ପ୍ରସନ୍ନତାପୂର୍ବକ ସହିଯିବା ଉଚିତ। ଏ କଥା ବୁଝିବା ଉଚିତ ଯେ "ମୋ ସେବା କାଣିଚ୍ଛଏ ହେଲେ ଖର୍ଚ୍ଚ ନ ହୋଇ ବରଂ ମୋର ଶୁଦ୍ଧ ସେବା ଓ ଶୁଦ୍ଧ ତପଶ୍ଚର୍ଯ୍ୟାର ଲାଭ ସଂଗୃହୀତ ହେଉଛି। ଏପରି ସୁଯୋଗ ତ ଭାଗ୍ୟରେ ଥିଲେ ମିଳେ। ମୋର ପରମ ସୌଭାଗ୍ୟ ଯେ ପିତାମାତା ମୋର ସେବା ଗ୍ରହଣ କରୁଛନ୍ତି।" ସେମାନେ ସେବା ଗ୍ରହଣ ନ କଲେ ମଧ୍ୟ ସେମାନଙ୍କର ସେବାରେ ନିୟୋଜିତ ରହିବା ହେଉଛି ପୁତ୍ରର କର୍ତ୍ତବ୍ୟ। ଯଦି ସେବାରେ କୌଣସି ଅଭାବ ବା ତ୍ରୁଟି ପରିଲକ୍ଷିତ ହୁଏ, ତେବେ ତାହାକୁ ତତ୍କ୍ଷଣାତ୍ ସଂଶୋଧନ କରି ସେବାରେ ତତ୍ପର ରହିବା ଆବଶ୍ୟକ।

ଯେଉଁ ପୁତ୍ର ଧନ, ଜମିବାଡ଼ି ଓ ଘର ଇତ୍ୟାଦି ପାଇବା ଆଶାରେ ବାପାମାଆଙ୍କର ସେବା କରେ, ସେ ପ୍ରକୃତରେ ଧନ ଇତ୍ୟାଦିର ସେବା କରିଥାଏ, ବାପାମାଆଙ୍କର ନୁହେଁ। ପୁତ୍ର କେବଳ ସେବା ସହିତ ସମ୍ବନ୍ଧ ରଖିବା ବାଞ୍ଛନୀୟ। ସେ ବାପାମାଆଙ୍କୁ କହିଦେବା ଉଚିତ ଯେ 'ଆପଣଙ୍କ ପାଖରେ ଯେଉଁ ଧନ-ସମ୍ପତ୍ତି ଅଛି, ତାହା ପଛେ ମୋ ଭାଇକୁ, ଭଉଣୀକୁ କିଂବା ଯାହାକୁ ଇଚ୍ଛା ତାକୁ ଦେଇଦିଅନ୍ତୁ, କିନ୍ତୁ ମୋ ସେବା ଗ୍ରହଣ କରନ୍ତୁ'। ବାପାମାଆ ଆମର ସେବା ଗ୍ରହଣ କଲେ ସେଥିରେ ସେମାନଙ୍କର କୃପା ଅଛି ବୋଲି ବୁଝ।

**ପ୍ରଶ୍ନ**—ବାପାମାଆ ଯଦି ଅନୁଚିତ ଓ ନିଷିଦ୍ଧ କର୍ମ କରିବାକୁ ଆଦେଶ ଦେବେ, ତେବେ ପୁତ୍ର କ'ଣ କରିବ?

**ଉତ୍ତର**—ଅନୁଚିତ ଆଦେଶ ଦୁଇ ପ୍ରକାରର–(୧) 'ଅମୁକକୁ ମାରିଦିଅ' ଏଭଳି ଅନ୍ୟର ଅନିଷ୍ଟ କରିବା ପାଇଁ ଆଦେଶ ଦେବା ଏବଂ (୨) 'ତୁମେ ଘର ପରିତ୍ୟାଗ କରି ବନକୁ ଯାଅ' ଇତ୍ୟାଦି ଆଦେଶ ଦେବା । ଏଥିମଧ୍ୟରୁ ଦ୍ୱିତୀୟ ଆଦେଶ ତ ପାଳନ କରିବା ଉଚିତ, କିନ୍ତୁ ପ୍ରଥମ ଆଦେଶ ପାଳିବା ଅନୁଚିତ । ସେଥିରେ ପିତାଙ୍କ ସାମର୍ଥ୍ୟକୁ ଲକ୍ଷ୍ୟ କରିବାର କଥା । ପିତା ଯଦି ସମର୍ଥ ହୋଇଥିବେ, ତେବେ ତାଙ୍କର ସେହି ଆଦେଶ ପାଳନ କରିବାରେ ମଧ୍ୟ କୌଣସି ଆପତ୍ତି ନାହିଁ । ଯେପରି କି—ଜମଦଗ୍ନି ପୁତ୍ର ପର୍ଶୁରାମକୁ କହିଲେ, ତୁମ ମାଆ ଜଣେ ବ୍ୟଭିଚାରିଣୀ ଏବଂ ତୁମର ଭାଇମାନେ ମୋର ଆଦେଶ ପାଳନ କରୁ ନାହାନ୍ତି । ଏଣୁ ସେମାନଙ୍କୁ ହତ୍ୟା କର । ପର୍ଶୁରାମ ତତ୍‌କ୍ଷଣାତ୍ ସେମାନଙ୍କ ତଣ୍ଟି କାଟିଦେଲେ । ଜମଦଗ୍ନି ପ୍ରସନ୍ନ ହୋଇ ତାଙ୍କୁ ବର ମାଗିବାକୁ କହିଲେ । ପର୍ଶୁରାମ ମାଆ ଓ ଭାଇମାନଙ୍କୁ ଜୀବିତ କରିଦେବା ପାଇଁ ପ୍ରାର୍ଥନା କଲେ । ତତ୍‌ସହିତ ସେ ଅନୁରୋଧ କଲେ ଯେ 'ମୁଁ ସେମାନଙ୍କୁ ମାରିଥିଲି ବୋଲି ସେମାନଙ୍କର ଯେପରି ମନେ ନ ରହୁ' । ଜମଦଗ୍ନି 'ତଥାସ୍ତୁ' କହିଲେ ଏବଂ ସମସ୍ତେ ଜୀବିତ ହୋଇଗଲେ ।

ଯଦି ପିତା ସମର୍ଥ ହୋଇ ନ ଥିବେ ଏବଂ ସେ ଅନୁଚିତ ଆଦେଶ ଦେବେ ତଥା ପୁତ୍ର ସାରାଜୀବନରେ ପିତାମାତାଙ୍କର କୌଣସି ଗୋଟିଏ ହେଲେ ଆଦେଶ ଉଲ୍ଲଙ୍ଘନ କରି ନ ଥିବ, ତେବେ ପୁତ୍ର ସେହି ଅନୁଚିତ ଆଜ୍ଞା ପାଳନ କରିବାରେ ତରବର ନ ହୋଇ ସେ ବିଷୟରେ ବିଚାର କରିବା ଉଚିତ ଓ ଭଗବାନଙ୍କୁ ସ୍ମରଣ କରିବା ଉଚିତ । ଯେପରି କି—ଗୌତମ ତାଙ୍କ ପୁତ୍ର ଚିରକାରୀକୁ କହିଲେ ତୁମର ମା' ବ୍ୟଭିଚାରିଣୀ । ତାକୁ ମାରିଦିଅ । ଏହା କହି ସେ ବନକୁ ଚାଲିଗଲେ । ଚିରକାରୀ ତରବାରି ବାହାର କଲେ ଏବଂ ପିତାଙ୍କ ଆଦେଶ ବିଷୟରେ ଚିନ୍ତା କଲେ । ବନ ମଧ୍ୟରେ ଗୌତମଙ୍କ ମନରେ ଏଭଳି ବିଚାର ଉଦୟ ହେଲା ଯେ ପତ୍ନୀକୁ ନ ମାରି ପରିତ୍ୟାଗ ମଧ୍ୟ କରାଯାଇପାରେ । ଏହା ମନସ୍ଥ କରି ସେ ଫେରି ଆସି ଦେଖିଲେ ଯେ ଚିରକାରୀ ହାତରେ ତରବାରି ଧରି ଠିଆ ହୋଇଛି । ତା'ପରେ ଚିରକାରୀକୁ ମନାକରି ଦେଲେ ଯେ ସେ ମା'ଙ୍କୁ ହତ୍ୟା ନ କରୁ ।

**ପ୍ରଶ୍ନ**—ଗୋସ୍ୱାମୀ ତୁଳସୀଦାସ କହିଛନ୍ତି—

**ଜାକେ ପ୍ରିୟ ନ ରାମ-ବୈଦେହୀ ।**

**ତଜିୟେ ତାହି କୋଟି ବୈରୀ ସମ, ଜଦ୍ୟପି ପରମ ସନେହୀ ॥**

**ତଜ୍ୟୋ ପିତା ପ୍ରହ୍ଲାଦ, ବିଭୀଷନ ବଂଧୁ, ଭରତ ମହତାରୀ ।**
**ବଲି ଗୁରୁ ତଜ୍ୟୋ, କଂତ ବ୍ରଜ-ବନିତହ୍ନି, ଭୟେ ମୁଦ-ମଂଗଲକାରୀ ॥**

ପ୍ରହ୍ଲାଦ ପିତାଙ୍କୁ, ବିଭୀଷଣ ଭାଇକୁ, ଭରତ ମା'ଙ୍କୁ, ବଳି ଗୁରୁଙ୍କୁ ଓ ଗୋପୀମାନେ ପତିଙ୍କୁ ତ୍ୟାଗ କରିଥିଲେ, ତେବେ କଣ ସେମାନଙ୍କୁ ଦୋଷ ଲାଗି ନ ଥିଲା?

**ଉତ୍ତର**—ଏଠାରେ ଲକ୍ଷ୍ୟ କରିବା କଥା ଯେ ସେମାନେ ପିତା ପ୍ରଭୃତିଙ୍କୁ କେଉଁ ବିଷୟରେ ଓ କେଉଁ କାରଣରୁ ତ୍ୟାଗ କରିଛନ୍ତି? ହିରଣ୍ୟକଶିପୁ ପ୍ରହ୍ଲାଦଙ୍କୁ ବହୁତ କଷ୍ଟ ଦେଉଥିଲା, କିନ୍ତୁ ପ୍ରହ୍ଲାଦ ତାହା ପ୍ରସନ୍ନଚିତ୍ତରେ ସହି ଯାଉଥିଲେ । ସେ ଭାବୁଥିଲେ ଯେ, ଏହି ଶରୀର ପିତାଙ୍କର । ଏଣୁ ଏହି ଶରୀରକୁ ସେ ଯେପରି ଚାହିଁବେ, ସେପରି ରଖି ପାରିବେ, ଏହା ଉପରେ ତାଙ୍କର ପୂରା ଅଧିକାର ଅଛି । ପ୍ରହ୍ଲାଦ ପିତାଙ୍କୁ କେବେ ମଧ୍ୟ କହି ନ ଥିଲେ ଯେ ଆପଣ ମୋତେ କାହିଁକି କଷ୍ଟ ଦେଉଛନ୍ତି? ସେ ଭାବୁଥିଲେ, ମୁଁ (ସ୍ୱୟଂ) ସାକ୍ଷାତ୍ ପରମାତ୍ମାଙ୍କ ଅଂଶ, ତେଣୁ ମୁଁ ଭଗବାନଙ୍କ ସେବାରେ ଓ ଭଜନରେ ନିମଗ୍ନ ଅଛି । ଏଥିରେ ବାଧା ସୃଷ୍ଟି କରିବା ଓ ମୋତେ ବାରଣ କରିବା ପିତାଙ୍କ ପକ୍ଷେ ଠିକ୍ ନୁହେଁ । ଏଣୁ ପ୍ରହ୍ଲାଦ ପିତାଙ୍କର ସେହି ଆଦେଶ ତ୍ୟାଗ କରିଥିଲେ । ଏହା ନ କରିଥିଲେ ପିତାଙ୍କୁ ନରକ ଯିବାକୁ ପଡ଼ିଆନ୍ତା । ଯଦି ସେ ପିତାଙ୍କର ଆଦେଶ ମାନି ଭଗବଦ୍‌ଭକ୍ତି ତ୍ୟାଗ କରିଦେଇଥାନ୍ତେ, ତେବେ ଏହାର ଦଣ୍ଡ ପିତାଙ୍କୁ ଭୋଗିବାକୁ ପଡ଼ିଥାନ୍ତା । ପୁତ୍ର ଏଭଳି କୌଣସି କାମ କରିବା ଉଚିତ ନୁହେଁ, ଯାହା ଫଳରେ ପିତାଙ୍କୁ ଦଣ୍ଡ ଭୋଗିବାକୁ ପଡ଼ିବ । ଏହି ଦୃଷ୍ଟିରୁ ସେ ପିତାଙ୍କର ଆଦେଶ ପାଳନ ନ କରି ତାଙ୍କର ହିତସାଧନ କଲେ, ତାଙ୍କୁ ପରିତ୍ୟାଗ କରି ନ ଥିଲେ ।

ରାବଣ ବିଭୀଷଣଙ୍କୁ ପଦାଘାତ କରି ସେଠାରୁ ଚାଲିଯିବାକୁ ଆଦେଶ ଦେଲା । ଏକଥା ଶୁଣି ବିଭୀଷଣ ଶ୍ରୀରାମଙ୍କ ପାଖକୁ ଚାଲିଗଲେ । ଅତଏବ ବିଭୀଷଣ ଭାଇକୁ ତ୍ୟାଗ କରି ନାହାନ୍ତି, ବରଂ ସେ ଅନ୍ୟାୟକୁ ତ୍ୟାଗ କରିଛନ୍ତି । ସେ ଅନ୍ୟାୟର ସମର୍ଥନ ବା ଅନୁମୋଦନ କରି ନାହାନ୍ତି । ବିଭୀଷଣ ରାବଣକୁ ତା'ର ହିତ କଥା କହିଥିଲେ ଏବଂ ତା'ର ହିତସାଧନ କରିଥିଲେ ।

ମାତା କୈକେୟୀ ରାମଙ୍କୁ ବନକୁ ପଠାଇ ଦୁଃଖ ଦେଲେ । କେବଳ ଏହି ପରିପ୍ରେକ୍ଷୀରେ ଭରତ ମାତାଙ୍କୁ ତ୍ୟାଗ କରିଥିଲେ । ଭରତ କହିଲେ ଯେ—ମାତା କୌଶଲ୍ୟା ଯେପରି ମୋତେ ରାମଙ୍କ ଠାରୁ ଅଧିକ ସ୍ନେହ କରୁଥିଲେ, ସେହିପରି ତୁମର ମଧ୍ୟ ରାମଙ୍କ ପ୍ରତି ମୋ ଅପେକ୍ଷା ଅଧିକ ସ୍ନେହ ରହିବା କଥା । କିନ୍ତୁ ତୁମେ

ରାମଙ୍କୁ ବନକୁ ପଠାଇଦେଲ । ଯେତେବେଳେ ତୁମେ ରାମଙ୍କର ମାତା ହୋଇ ରହି ପାରିଲ ନାହିଁ, ସେତେବେଳେ ମୋର ମାତା ହୋଇ କିପରି ରହି ପାରିବ? ଏହି ଦୋଷ ପାଇଁ ତୁମକୁ ଦଣ୍ଡ ଦେବା ମୋ ପକ୍ଷରେ ଉଚିତ ନୁହେଁ । ମୁଁ କେବଳ ଏତିକି କରିପାରେ ଯେ ତୁମକୁ 'ମାଆ' ବୋଲି ଡାକିବି ନାହିଁ । ମୁଁ ଆଉ ଅଧିକ କ'ଣ କରି ପାରିବି?

ବଳି ଗୁରୁଙ୍କୁ ଏହି କାରଣରୁ ତ୍ୟାଗ କରିଥିଲେ ଯେ ସାକ୍ଷାତ୍ ଭଗବାନ ବ୍ରାହ୍ମଣ ବେଶରେ ଆସି ତାଙ୍କୁ ଦାନ ମାଗିବାବେଳେ ଗୁରୁ ତାଙ୍କର ଦାନ ଦେବାରେ ବାଧା ଦେଲେ । ତେଣୁ ସେ ଗୁରୁଙ୍କ ଆଦେଶ ମାନି ନାହାନ୍ତି । ବଳି ଗୁରୁଙ୍କ ହିତ ପାଇଁ ତାଙ୍କ ଆଦେଶ ନ ପାଳି ତାହା ପ୍ରତ୍ୟାଖ୍ୟାନ କରିଛନ୍ତି । ବଳି ଦାନ ଦେବା ପାଇଁ ପ୍ରସ୍ତୁତ ଥିଲେ । ଯଦି ସେହି ସମୟରେ ସେ ଗୁରୁଙ୍କ ଆଦେଶ ମାନିଥାନ୍ତେ, ତେବେ ତାଙ୍କ ଦୋଷ ଗୁରୁଙ୍କୁ ଲାଗିଥାନ୍ତା । ତେଣୁ ସେ ଗୁରୁଙ୍କ ଅଭିଶାପ ଗ୍ରହଣ କରିନେଲେ ଏବଂ ଗୁରୁଙ୍କୁ ସେହି ଦୋଷ ଓ ଅମଙ୍ଗଳରୁ ରକ୍ଷା କରିଦେଲେ । ନିଜେ ଦଣ୍ଡ ଭୋଗି ମଧ୍ୟ ଗୁରୁଙ୍କୁ ଦଣ୍ଡ ଭୋଗିବାରୁ ରକ୍ଷା କଲେ । ଏଇ ତ ପ୍ରକୃତ ଗୁରୁସେବା! ଭଗବାନଙ୍କ ସମ୍ମୁଖକୁ ଯିବା ପାଇଁ ଗୋପୀମାନଙ୍କୁ ସେମାନଙ୍କ ସ୍ୱାମୀମାନେ ବାରଣ କରୁଥିଲେ । ଏଣୁ ଗୋପୀମାନେ ନିଜ ନିଜ ସ୍ୱାମୀଙ୍କୁ ପରିତ୍ୟାଗ କଲେ । ସେମାନେ ଯଦି ସ୍ୱାମୀଙ୍କ କଥା ମାନିଥାନ୍ତେ, ତେବେ ସ୍ୱାମୀମାନେ ପାପର ଭାଗୀ ହୋଇଥାନ୍ତେ । ଏଣୁ ସ୍ୱାମୀଙ୍କ କଥା ଅମାନ୍ୟ କରି ସେମାନେ ନିଜ ନିଜ ସ୍ୱାମୀଙ୍କୁ ପାପରୁ ରକ୍ଷା କଲେ ।

କହିବାର ତାତ୍ପର୍ଯ୍ୟ ହେଉଛି ମନୁଷ୍ୟଶରୀରର ସାର୍ଥକତା ପରମାତ୍ମାଙ୍କୁ ପ୍ରାପ୍ତ କରିବାରେ ନିହିତ । ଏଥିରେ ଆମର ସହାୟତା କରୁଥିବା ଲୋକ ଆମର ହିତ କରିଥାଏ ଓ ବାଧା ଉତ୍ପନ୍ନ କରୁଥିବା ଲୋକ ଆମର ଅହିତ କରିଥାଏ । ପ୍ରହ୍ଲାଦ ପ୍ରଭୃତି ସମସ୍ତ ବ୍ୟକ୍ତି ପରମାତ୍ମପ୍ରାପ୍ତିରେ ବାଧା ସୃଷ୍ଟି କରୁଥିବା ଲୋକଙ୍କୁ ପରିତ୍ୟାଗ କରିଥିଲେ, ପିତା ପ୍ରଭୃତିଙ୍କୁ ନୁହେଁ । ସେଥିଯୋଗୁଁ ସେମାନଙ୍କର ମଙ୍ଗଳ ହିଁ ହୋଇଥିଲା ।

**ପ୍ରଶ୍ନ**—ମାତାଙ୍କ ସ୍ଥାନ ଉଚ୍ଚରେ, ନା ପିତାଙ୍କର? ଏବଂ ସେ ଏଭଳି ଉଚ୍ଚ ହେବାର କାରଣ କ'ଣ?

**ଉତ୍ତର**—ମାତାଙ୍କ ସ୍ଥାନ ଉଚ୍ଚରେ । ମାତାଙ୍କ ସ୍ଥାନ ପିତାଙ୍କ ସ୍ଥାନଠାରୁ ହଜାରେ ଗୁଣ ଅଧିକ ଉଚ୍ଚ ବୋଲି କୁହାଯାଇଛି—**'ସହସ୍ରଂ ତୁ ପିତୃନ୍ମାତା ଗୌରବେଣାତିରିଚ୍ୟତେ'** (ମନୁ. ୨ । ୧୪୫) । ରାମ ଯେତେବେଳେ ବନବାସ

ପାଇଁ ବାହାରିଲେ, ସେତେବେଳେ ସେ ମାଆଙ୍କ ପାଖକୁ ଗଲେ ଏବଂ ତାଙ୍କ ଚରଣରେ ପ୍ରଣାମ କରି କହିଲେ, ''ମାଆ! ମୋତେ ବନବାସ ପାଇଁ ଆଦେଶ ମିଳିଛି ।'' ମାଆ କହିଲେ ଯେ ଯଦି କେବଳ ପିତାଙ୍କର ଏଭଳି ଆଦେଶ ହୋଇଛି, ତେବେ ମାଆକୁ ବଡ଼ ମନେକରି ତୁମେ ବନକୁ ଯାଅ ନାହିଁ—

**ଜୌଁ କେୱଲ ପିତୁ ଆୟସୁ ତାତା । ତୌ ଜନି ଜାହୁ ଜାନି ବଡ଼ି ମାତା ॥**

(ମାନସ, ଅଯୋଧ୍ୟା. ୫୬ । ୧)

ଯଦି ତୁମ କନିଷ୍ଠା ମାତା ଓ ପିତା ଉଭୟେ ବନକୁ ଯିବା ପାଇଁ କହି ଦେଇଛନ୍ତି*, ତେବେ ବନ ତୁମ ପାଇଁ ଶହେ ଅଯୋଧ୍ୟା ସଙ୍ଗେ ସମାନ—

**ଜୌଁ ପିତୁ ମାତୁ କହେଉ ବନ ଜାନା । ତୌ କାନନ ସତ ଅୱଧ ସମାନା ॥**

(ମାନସ, ଅଯୋଧ୍ୟା. ୫୬ । ୧)

ପିତା ଧନସମ୍ପତ୍ତି ଖର୍ଚ୍ଚ କରି ପୁତ୍ରର ଲାଳନପାଳନ କରନ୍ତି, କିନ୍ତୁ ମାତା ନିଜର ଶରୀର ବିନିମୟରେ ପୁତ୍ରର ଲାଳନପାଳନ କରନ୍ତି । ଧନସମ୍ପତ୍ତି ପ୍ରଭୃତି ମମତାଯୁକ୍ତ ବସ୍ତୁ ହୋଇଥିବା ସ୍ଥଳେ ଶରୀର ଅହଂଭାବଯୁକ୍ତ ବସ୍ତୁ ଅଟେ । ମମତାଠାରୁ ଅହଂଭାବ ନିକଟତର । ମମତାଯୁକ୍ତ ବସ୍ତୁର ସଂଯୋଗ-ବିୟୋଗ ଲାଗି ରହିଥାଏ, କିନ୍ତୁ ଶରୀର ତାହା ତୁଳନାରେ ଅପେକ୍ଷାକୃତ ସ୍ଥାୟୀ । ଏଣୁ ମାତାର ସ୍ଥାନ ଉଚ୍ଚ ହେବା ସ୍ୱାଭାବିକ ।

ମାତା ନିଜ ଯୁବାବସ୍ଥାକୁ ପୁତ୍ର ପାଇଁ ଉତ୍ସର୍ଗ କରିଥାଏ । ନିଜ ଶରୀରକୁ କ୍ଷୀଣ କରି, ସ୍ତନ୍ୟପାନ କରାଇ ପାଳିପୋଷି ବଡ଼ କରେ । ସେ ଏକସଙ୍ଗେ ମାଆ, ଧାଈ, ବାରିକ, ଧୋବା, ଦରଜି ଓ ଗୁରୁ ସମସ୍ତଙ୍କ କାମ ଚଳାଏ । ସେ ମେହେନ୍ତର ଭଳି ଝାଡ଼ା ପରିସ୍ରା ମଧ୍ୟ ସଫା କରିଥାଏ । ଏହା ସେ ଭାରସ୍ୱରୂପ ମନେକରି କରେ ନାହିଁ, ବରଂ ଅତି ସ୍ନେହରେ ମମତା ଓ ଉତ୍ସାହପୂର୍ବକ କରେ । ମାତା ଏତେ କାମ କରିବା ବଦଳରେ କିଛି ପାଇବାର ଭାବନା ରଖେ ନାହିଁ । ପୁତ୍ର ଅସୁସ୍ଥ ହେଲେ ତା' ଚିନ୍ତାରେ ମାଆ ମଧ୍ୟ ଦୁର୍ବଳ ହୋଇଯାଏ । ଏଣୁ ମାତା ସଦୃଶ ପୁତ୍ରର ଲାଳନପାଳନ କରିବା ବ୍ୟକ୍ତି ଆଉ କିଏ ହୋଇପାରିବ? **'ମାତ୍ରା ସମଂ ନାସ୍ତି ଶରୀରପୋଷଣମ୍'** । ଏଣୁ ମାତାଙ୍କ ସ୍ଥାନ ଉଚ୍ଚରେ । ଶାସ୍ତ୍ରରେ ଉଲ୍ଲେଖ ଅଛି ଯେ ପୁତ୍ର ସାଧୁ ସନ୍ନ୍ୟାସୀ ହୋଇଗଲେ ମଧ୍ୟ ମାତାଙ୍କୁ ସମ୍ମୁଖରେ ଦେଖିଲେ ସାକ୍ଷାତ୍ ଦଣ୍ଡବତ୍ ପ୍ରଣାମ କରିବା ଉଚିତ । ଏତେ ଉଚ୍ଚ ସ୍ଥାନ ଆଉ କାହାର ହୋଇ ପାରିବ?

---

* କୌଶଲ୍ୟା ନିଜ ଉଦାରତା ଯୋଗୁଁ ଏପରି କହିଛନ୍ତି । ସେ ଶିକ୍ଷା ଦେଇଛନ୍ତି ଯେ ମାଆଠାରୁ ମଧ୍ୟ ବିମାତା ଅଧିକ ଆଦରର ପାତ୍ର । ଏହାଦ୍ୱାରା ପରିବାରରେ ପାରସ୍ପରିକ ପ୍ରୀତି ବୃଦ୍ଧିପାଏ ।

**ପ୍ରଶ୍ନ**—ପିତାମାତାଙ୍କ ସେବା କଲେ ଲାଭ କ'ଣ?

**ଉତ୍ତର**—ପିତାମାତାଙ୍କ ସେବା କରିବା ଦ୍ୱାରା ଇହଲୋକ ଓ ପରଲୋକ ଉଭୟ ସୁଧୁରିଯାଏ ଏବଂ ଭଗବାନ ଖୁସୀ ହୁଅନ୍ତି। ଯେଉଁମାନେ ପିତାମାତାଙ୍କ ସେବା କରନ୍ତି ନାହିଁ, ସେମାନଙ୍କ ଉପରେ ଭଗବାନ ବିଶ୍ୱାସ କରନ୍ତି ନାହିଁ; କାରଣ ନିଜ ପିତାମାତାଙ୍କର ସେବା ଓ ଭକ୍ତି କରୁ ନ ଥିବା ବ୍ୟକ୍ତି ଭଗବାନଙ୍କୁ କ'ଣ ଭକ୍ତି କରିବ?

ପୁଣ୍ଡରୀକ କାୟମନୋବାକ୍ୟରେ ତତ୍ପରତାପୂର୍ବକ ପିତା-ମାତାଙ୍କ ସେବା କରିଥିଲେ। ତାଙ୍କ ସେବାରେ ପ୍ରସନ୍ନ ହୋଇ ଭଗବାନ ବିନା ଡାକରାରେ ମଧ୍ୟ ପୁଣ୍ଡରୀକଙ୍କ ଘରେ ପହଞ୍ଚିଗଲେ ଓ କହିଲେ—"ପୁଣ୍ଡରୀକ! ତୁମର ପିତୃମାତୃଭକ୍ତିରେ ପ୍ରସନ୍ନ ହୋଇ ମୁଁ ସ୍ୱୟଂ ତୁମକୁ ଦର୍ଶନ ଦେବା ପାଇଁ ଆସିଛି।" ସେହି ସମୟରେ ପୁଣ୍ଡରୀକ ପିତାମାତାଙ୍କ ସେବାରେ ନିୟୋଜିତ ଥିଲେ। ତେଣୁ ସେ ଭଗବାନଙ୍କୁ କହିଲେ—"ଯେଉଁ ସେବା ଯୋଗୁଁ ଆପଣ ଏଠାକୁ ମୋତେ ଦର୍ଶନ ଦେବା ପାଇଁ ଆସିଛନ୍ତି, ଏବେ ସେହି ସେବା ମୁଁ କାହିଁକି ପରିତ୍ୟାଗ କରିବି? ବର୍ତ୍ତମାନ ମୁଁ ପିତାମାତାଙ୍କ ସେବାରେ ବ୍ୟସ୍ତ ଅଛି। ସେବା ସରିଲେ ମୁଁ ଆପଣଙ୍କୁ ଦର୍ଶନ କରି ପାରିବି। ସେପର୍ଯ୍ୟନ୍ତ ଯଦି ଆପଣ ଅପେକ୍ଷା କରିବାକୁ ଚାହୁଁଛନ୍ତି, ତେବେ ଏହି ଇଟା ଉପରେ ଠିଆ ହୋଇ କିଛିକ୍ଷଣ ପ୍ରତୀକ୍ଷା କରନ୍ତୁ।" ଏହା କହି ପୁଣ୍ଡରୀକ ଦୁଇଖଣ୍ଡ ଇଟା ପଛଆଡ଼କୁ ଫିଙ୍ଗିଦେଲେ। ଭଗବାନ ତା'ଉପରେ ଠିଆ ହୋଇ ରହିଲେ। ଇଟା ଉପରେ ଠିଆ ହୋଇଥିବା ଯୋଗୁଁ ଭଗବାନଙ୍କ ନାମ 'ବିଠଲ' ରହିଲା। ଭଗବାନଙ୍କର ଏହି ରୂପକୁ ପଣ୍ଢରପୁର (ମହାରାଷ୍ଟ୍ର)ରେ ଦର୍ଶନ କରାଯାଇପାରେ। ଏହିଭଳି ଆଉ ଗୋଟିଏ କଥା ମହାଭାରତରେ ମୂକ ଚଣ୍ଡାଳ ପ୍ରସଙ୍ଗରେ ମଧ୍ୟ ଅଛି। ମୂକ ଚଣ୍ଡାଳର ପିତାମାତାଙ୍କ ପ୍ରତି ଭକ୍ତି ଦେଖି ସ୍ୱୟଂ ଭଗବାନ ତା' ଘରେ ରହୁଥିଲେ। କହିବାର ତାତ୍ପର୍ଯ୍ୟ ହେଉଛି ଯେ ପିତାମାତାଙ୍କ ସେବା ଦ୍ୱାରା ଇହଲୋକ ଓ ପରଲୋକ ସବୁଠି ଲାଭ ହୋଇଥାଏ।

**ପ୍ରଶ୍ନ**—ଯଦି ପିତାମାତାଙ୍କ ସେବାରେ ଏତେ ମାହାତ୍ମ୍ୟ ଅଛି, ତେବେ ସେମାନଙ୍କ ସେବା ପରିତ୍ୟାଗ କରି ଲୋକେ ସାଧୁସନ୍ନ୍ୟାସୀ କାହିଁକି ହୋଇଯାଉଛନ୍ତି?

**ଉତ୍ତର**—ଯଦି କୌଣସି ଲୋକ ମରିଯାଏ, ତେବେ ତାକୁ ପିତାମାତାଙ୍କ ସେବା ହରାଇବାକୁ ପଡ଼ିଥାଏ। କିନ୍ତୁ ଏହାଦ୍ୱାରା ସେ ଦୋଷର ଭାଗୀଦାର ହୁଏ ନାହିଁ। ଏହିଭଳି ଯାହାର ସଂସାର ପ୍ରତି ପ୍ରକୃତ ବୈରାଗ୍ୟ ଭାବ ଆସିଯାଏ, ସେ ଦୋଷର ଭାଗୀଦାର ହୁଏ ନାହିଁ। ଯିଏ ସର୍ବଥା ଭଗବାନଙ୍କ ଶରଣ ନିଏ, ତାକୁ ମଧ୍ୟ

କୌଣସି ଦୋଷ ଲାଗି ନ ଥାଏ, କାରଣ ତା'ଉପରେ କାହାରି ହେଲେ ଋଣ ରହେ ନାହିଁ—

**ଦେବର୍ଷିଭୂତାପ୍ତନୃଣାଂ ପିତୃଣାଂ ନ କିଂକରୋ ନାୟମୃଣୀ ଚ ରାଜନ୍ ।**
**ସର୍ବାତ୍ମନା ଯଃ ଶରଣଂ ଶରଣ୍ୟଂ ଗତୋ ମୁକୁନ୍ଦଂ ପରିହୃତ୍ୟ କର୍ତ୍ତମ୍ ॥**

(ଶ୍ରୀମଦ୍‌ଭାଗବତ ୧୧ । ୫ । ୪୧)

"ରାଜନ୍! ଯିଏ ସବୁ କାମ ଛାଡ଼ି ପୂର୍ଣ୍ଣରୂପରେ ଶରଣାଗତବତ୍ସଳ ଭଗବାନଙ୍କର ଶରଣାଗତ ହୁଏ, ସେ ଦେବତା, ଋଷି, ପ୍ରାଣୀ, କୁଟୁମ୍ବ ଓ ପିତୃପୁରୁଷ—କାହାରି ହେଲେ ଋଣୀ ଓ ସେବକ ହୋଇ ରହେ ନାହିଁ ।"

ମନୁଷ୍ୟଜନ୍ମର ପ୍ରକୃତ ଲକ୍ଷ୍ୟ ହେଉଛି ଭଗବାନଙ୍କ ସହ ସଂଲଗ୍ନ ହେବା । ଯେ ସେଥିରେ ସଂଶ୍ଳିଷ୍ଟ ଥିବ, ସେ ଯଦି ପିତାମାତାଙ୍କ ସେବା ଓ ପରିବାର ତ୍ୟାଗ କରେ, ସେଥିପାଇଁ ତାକୁ ଦୋଷ ଲାଗିବ ନାହିଁ ।

**ପ୍ରଶ୍ନ**—ଯଦି ଦୁଇ ଚାରୋଟି ପୁତ୍ର ଥିବେ ଏବଂ ସେମାନଙ୍କ ମଧ୍ୟରୁ ଜଣେ କେହି ସାଧୁସନ୍ନ୍ୟାସୀ ହୋଇଯାଏ, ତେବେ ତ କିଛି ଅସୁବିଧା ନାହିଁ, କିନ୍ତୁ ଯଦି କାହାର ଗୋଟିଏ ବୋଲି ପୁତ୍ର ଥିବ ଓ ସେ ଯଦି ସାଧୁସନ୍ନ୍ୟାସୀ ହୋଇଯିବ, ତେବେ ତା'ର ପିତାମାତା କାହାକୁ ଆଶ୍ରା କରି ବଞ୍ଚିବେ?

**ଉତ୍ତର**—ସେଭଳି ପୁତ୍ରର କର୍ତ୍ତବ୍ୟ ହେଉଛି ଯେ ଯେପର୍ଯ୍ୟନ୍ତ ତା'ର ପିତାମାତା ଜୀବିତ ଥିବେ, ସେପର୍ଯ୍ୟନ୍ତ ସେ ସେମାନଙ୍କର ସେବା କରୁଥିବ, ସେମାନଙ୍କୁ ପରିତ୍ୟାଗ କରିବ ନାହିଁ; କାରଣ ଭଗବତ୍‌ପ୍ରାପ୍ତି ପାଇଁ କେବଳ ସାଧୁ ହୋଇଯିବା ଜରୁରୀ ନୁହେଁ, ବରଂ ସଂସାର ପ୍ରତି ବୈରାଗ୍ୟ ଓ ଭଗବାନଙ୍କ ପ୍ରତି ପ୍ରେମ ଭାବ ରହିବା ନିତାନ୍ତ ପ୍ରୟୋଜନ । ଏଣୁ ପିତାମାତାଙ୍କ ସେବା କରୁଥାଇ ମଧ୍ୟ ଯଦି ଜଣେ ଭଜନ-ସ୍ମରଣ ଆଦି କରେ, ତେବେ ତାକୁ ଭଗବତ୍‌ପ୍ରାପ୍ତି ହେବାରେ କୌଣସି ଅସୁବିଧା ନାହିଁ, ବରଂ ପିତାମାତାଙ୍କ ପ୍ରସନ୍ନତା ଯୋଗୁଁ ଏହା ଭଗବତ୍-ପ୍ରାପ୍ତିରେ ସହାୟକ ହୋଇଥାଏ । କହିବାର ଅଭିପ୍ରାୟ ହେଉଛି ପିତାମାତାଙ୍କ ଋଣ ପରିଶୋଧ ନ କରି ସେମାନଙ୍କୁ ପରିତ୍ୟାଗ କରିବା ଅନୁଚିତ । କିନ୍ତୁ ଯଦି ବୈରାଗ୍ୟ ତୀବ୍ର ହୋଇଯାଏ, ଭଗବାନଙ୍କ ଚରଣରେ ଅନନ୍ୟ ପ୍ରେମଭାବ ଉତ୍ପନ୍ନ ହୋଇଯାଏ, ଏଭଳି ସ୍ଥିତିରେ ପିତାମାତାଙ୍କ ସେବା ଉପେକ୍ଷିତ ହେଲେ ତାକୁ କୌଣସି ଦୋଷ ଲାଗିବ ନାହିଁ ।

ଯେଉଁ ଲୋକ ଘରେ ଥାଇ ମଧ୍ୟ ପିତାମାତାଙ୍କ ସେବା କରେ ନାହିଁ, କେବଳ ନିଜ ସ୍ତ୍ରୀ-ପୁତ୍ରଙ୍କ କାର୍ଯ୍ୟରେ ବ୍ୟସ୍ତ ରହେ, ତାକୁ ନିଶ୍ଚିତରୂପେ ଦୋଷ (ପାପ) ଲାଗିବ । ଅପରପକ୍ଷରେ ଯେଉଁ ଲୋକ ପିତାମାତାଙ୍କୁ, ଘର ଓ ପରିବାରକୁ ଛାଡ଼ି

ସାଧୁ ହୋଇଯାଏ, ଅଥଚ ଘର ଓ ଆଶ୍ରମ ତିଆରି କରିବା, ପଇସାପତ୍ର ସଞ୍ଚୟ କରିବା, ଚେଲାଚେଲୀ କରିବା, ଆରାମଦାୟକ ଜୀବନ ବିତାଇବା ଇତ୍ୟାଦିରେ ଲିପ୍ତ ରହେ, ସେଭଳି ଲୋକକୁ ପିତାମାତାଙ୍କ ସେବା ନ କରିଥିବା ଯୋଗୁଁ ପାପ ଲାଗିଥାଏ ।

**ପ୍ରଶ୍ନ**—ଯଦି କେହି ସାଧୁସନ୍ନ୍ୟାସୀ ହୋଇ ପଇସାପତ୍ର ସଂଗ୍ରହ କରେ ଏବଂ ପିତାମାତା ଓ ସ୍ତ୍ରୀପୁତ୍ରଙ୍କ ପାଖକୁ ଟଙ୍କା ପଠାଏ, ସେମାନଙ୍କ ଭରଣପୋଷଣ କରେ, ତେବେ ତାକୁ କ'ଣ ଦୋଷ ଲାଗିବ?

**ଉତ୍ତର**—ଯେଉଁ ଲୋକ ସାଧୁସନ୍ନ୍ୟାସୀ ହୋଇ ପିତାମାତା ପ୍ରଭୃତିଙ୍କ ପାଖକୁ ଟଙ୍କା ପଠାଏ, ସେ ତ ପାପର ଭାଗୀ ହୋଇଥାଏ, ତା'ସହିତ ଯେଉଁମାନେ ତା' ପଇସାରେ ଜୀବନ-ନିର୍ବାହ କରିଥାନ୍ତି, ସେମାନେ ମଧ୍ୟ ପାପରେ ଭାଗୀ ହୁଅନ୍ତି । କାରଣ ସେମାନେ ସମସ୍ତେ ଶାସ୍ତ୍ର ଆଜ୍ଞାର ବିରୁଦ୍ଧ କାର୍ଯ୍ୟ କରିଥାନ୍ତି । ପିତାମାତାଙ୍କ ସେବା ତ ସେ ଗୃହସ୍ଥାଶ୍ରମରେ ଥାଇ ମଧ୍ୟ କରି ପାରିଥାନ୍ତା, କିନ୍ତୁ ଅବୈଧ କାମ କରି ସନ୍ନ୍ୟାସ-ଆଶ୍ରମକୁ ଦୂଷିତ କରିଥିବାରୁ ସେ ପାପରେ ନିଶ୍ଚୟ ଭାଗୀ ହେବ । ସେ ପାପରୁ ରକ୍ଷା ପାଇ ପାରିବ ନାହିଁ ।

**ପ୍ରଶ୍ନ**—ଯଦି ଘରେ ମାଆର ଭରଣପୋଷଣ କରିବା ପାଇଁ କେହି ନ ଥାନ୍ତି, ତାହାର ସେବା କରିବା ପାଇଁ କେହି ନ ଥାନ୍ତି, ତେବେ ସେଭଳି ପରିସ୍ଥିତିରେ ସାଧୁସନ୍ନ୍ୟାସୀ ହୋଇଯାଇଥିବା ପୁଅ ମାଆର ଭରଣପୋଷଣ କରିପାରିବ କି ନାହିଁ?

**ଉତ୍ତର**—ମାଆର ଯଦି ଅନ୍ୟ କୌଣସି ଆଶ୍ରୟ ନ ଥାଏ, ତେବେ ପୁଅ ସାଧୁ ହେବାପରେ ମଧ୍ୟ ମାଆର ଭରଣପୋଷଣ କରି ପାରିବ ଏବଂ ଏହା ନିଶ୍ଚିତରୂପେ କରିବା ଉଚିତ । ଯେକୌଣସି ପ୍ରାଣୀ ଅସହାୟ ଅବସ୍ଥାରେ ଥିଲେ ତା'ର ସେବା କରିବା ଉଚିତ; ପୁଣି ମାଆ ତ ତାହାର ଜନ୍ମଦାତ୍ରୀ! ସେ ଯଦି ଅସହାୟ ଅବସ୍ଥାରେ ଥାଏ, ତେବେ ତା'ର ସେବା କରିବାରେ କୌଣସି ଦୋଷ ନାହିଁ ।

**ପ୍ରଶ୍ନ**—କନ୍ୟା ତ ତା' ସ୍ୱାମୀଙ୍କ ଘରକୁ ଚାଲିଯାଏ, ତେବେ ସେ ପିତାମାତାଙ୍କ ସେବା କିଭଳି କରିବ ଏବଂ ସେବା ନ କଲେ ସେ କିପରି ଋଣମୁକ୍ତ ହେବ?

**ଉତ୍ତର**—ଯଦି କାହା ଉପରେ ଋଣ ଭାର ଏତେ ଅଧିକ ହୋଇଯାଇଥିବ ଯେ ପରିଶୋଧ କରିବା ପାଇଁ ମନ ଥିଲେ ମଧ୍ୟ ସାମର୍ଥ୍ୟ ନ ଥିବା ଯୋଗୁଁ ସେ ପରିଶୋଧ କରିପାରୁ ନ ଥିବ, ସେହି ପରିପ୍ରେକ୍ଷୀରେ ସେ ଯଦି ଋଣଦାତାଙ୍କ ପାଖକୁ ଯାଇ କହିଦେବ ଯେ ମୁଁ ନିଜକୁ ଓ ମୋର ସ୍ତ୍ରୀ, ପୁତ୍ର, ଘରଦ୍ୱାର, ଜମିବାଡ଼ି

ସବୁକିଛି ଆପଣଙ୍କୁ ସମର୍ପିତ କରି ଦେଉଛି, ଆପଣ ଯେଭଳି ଚାହିଁବେ, ସେଭଳି ଏସବୁକୁ ବ୍ୟବହାର କରି ପାରିବେ, ତେବେ ତା'ଉପରେ କୌଣସି ଋଣ ରହେ ନାହିଁ, ସମସ୍ତ ଋଣ ଛାଡ଼ ହୋଇଯାଏ। ଠିକ୍ ସେହିଭଳି କନ୍ୟାଟି ପିଲାଦିନୁ ପିତାମାତାଙ୍କ ନିକଟରେ ସମର୍ପିତ ରହିଥାଏ। ସେ ନିଜର କିଛି ଇଚ୍ଛା ରଖି ନ ଥାଏ। ପିତାମାତା ଯେଉଁ ସ୍ଥାନରେ ତା'ର ବିବାହ କରାଇ ଦିଅନ୍ତି, ସେ ପ୍ରସନ୍ନ ଚିତ୍ତରେ ସେଠାକୁ ଚାଲିଯାଏ। ସେ ନିଜ ଗୋତ୍ରକୁ ମଧ୍ୟ ପତିଙ୍କ ଗୋତ୍ରରେ ମିଶାଇଦିଏ। ଯେଉଁ କନ୍ୟା ଏତେ ବଡ଼ ତ୍ୟାଗ କରିପାରେ, ତା'ଉପରେ ପିତାମାତାଙ୍କ ଋଣ କିପରି ରହିବ? ଆଦୌ ରହିବ ନାହିଁ।

**ପ୍ରଶ୍ନ**—ପିତାମାତାଙ୍କର ଯଦି କୌଣସି ସାହାଭରସା ନ ରହେ, ତେବେ ସେଭଳି ପରିସ୍ଥିତିରେ ବିବାହିତା କନ୍ୟା ପିତାମାତାଙ୍କ ଭରଣପୋଷଣ କରି ପାରିବ କି ନାହିଁ?

**ଉତ୍ତର**—ସେ ଅସହାୟ ପିତାମାତାଙ୍କ ସେବା କରି ପାରିବ। ଯଦି ବିବାହିତା କନ୍ୟାର ସନ୍ତାନସନ୍ତତି ଥାଆନ୍ତି, ତେବେ ପିତାମାତା ତା'ଘରେ ଅନ୍ନଜଳ ଗ୍ରହଣ କରି ପାରିବେ। ତା'ଘରେ ରହି ପାରିବେ। କିନ୍ତୁ ଯଦି ତା'ର କୌଣସି ସନ୍ତାନ-ସନ୍ତତି ନ ଥାନ୍ତି, ତେବେ ପିତାମାତାଙ୍କର ତା'ଘରେ ଅନ୍ନଜଳ ଗ୍ରହଣ କରିବାର ଅଧିକାର ନାହିଁ।

ପିତାମାତା କନ୍ୟାଦାନ (ବିବାହ) କରିଦେବା ପରେ ତା' ଘରେ ଅନ୍ନ ଗ୍ରହଣ କରି ପାରିବେ ନାହିଁ, କାରଣ ଦାନ ଦିଆସରିଥିବା ବସ୍ତୁ ଉପରେ ଦାତାର କୌଣସି ଅଧିକାର ନ ଥାଏ। କିନ୍ତୁ କନ୍ୟାର ସନ୍ତାନସନ୍ତତି (ପୁଅ ବା ଝିଅ) ଜନ୍ମ ହେବାପରେ ପିତାମାତା କନ୍ୟା ଘରେ ଅନ୍ନଜଳ ଗ୍ରହଣ କରି ପାରିବେ। କାରଣ କନ୍ୟାର ସ୍ୱାମୀ (ଜାମାତା) କେବଳ ପିତୃଋଣରୁ ମୁକ୍ତ ହେବା ପାଇଁ ଅନ୍ୟର କନ୍ୟାକୁ ଗ୍ରହଣ କରିଥାଏ ଓ ତା'ର ସନ୍ତାନସନ୍ତତି ଜନ୍ମ ହେବାପରେ ସେ ପିତୃଋଣରୁ ମୁକ୍ତ ହୋଇଯାଏ। ଏଣୁ କନ୍ୟାର ସନ୍ତାନ ହେବାପରେ କନ୍ୟା ଉପରେ ପିତାମାତାଙ୍କର ଅଧିକାର ଆସିଯାଏ; ସେଇଥିପାଇଁ ତ ନାତି ନିଜ ଅଜାଆଈଙ୍କ ଶ୍ରାଦ୍ଧତର୍ପଣ ଆଦି କରିପାରେ।

ପିତାମାତା ଅସହାୟ ହୋଇଥିଲେ ଏବଂ ତାଙ୍କର ସେବା କରିବାକୁ କେହି ନ ଥିଲେ, ତାଙ୍କର ସେବା କରିବା କନ୍ୟାର ଦାୟିତ୍ୱ। ବିବାହିତା କନ୍ୟାର ସନ୍ତାନ ହୋଇଥିଲେ ମଧ୍ୟ ସେ ପିତାମାତାଙ୍କର ସେବା କରିବା ଉଚିତ। ଦ୍ୱିତୀୟତଃ, ବର୍ତ୍ତମାନ ସରକାରୀ ନିୟମ ଅନୁସାରେ ଯଦି ପୁଅଝିଅଙ୍କର ପିତାମାତାଙ୍କ ସମ୍ପତ୍ତିରେ

ସମାନ ଅଧିକାର ଅଛି, ତେବେ ଝିଅଠାରୁ ସେବା ଗ୍ରହଣ କରିବା ପାଇଁ ମଧ୍ୟ ପିତାମାତାଙ୍କର ଅଧିକାର ଅଛି!



## (୫) ନାରୀ ବିଷୟକ ଉପଦେଶ

**ପ୍ରଶ୍ନ**—କନ୍ୟା ସ୍ୱୟଂବର କରି ପାରିବ କି?

**ଉତ୍ତର**—ଶାସ୍ତ୍ରରେ ସ୍ୱୟଂବର କଥା ବର୍ଣ୍ଣିତ ଅଛି। କିନ୍ତୁ ସୀତା, ଦ୍ରୌପଦୀ, ଦମୟନ୍ତୀ ଆଦି ଯେଉଁମାନେ ସ୍ୱୟଂବର କରିଛନ୍ତି, ସେମାନେ ଦୁଃଖ ପାଇଛନ୍ତି। ଆଜିକାଲି ମଧ୍ୟ ଯେଉଁ କନ୍ୟାମାନେ ନିଜ ପସନ୍ଦରେ ବର ସ୍ଥିର କରୁଛନ୍ତି, ସେମାନେ କେଉଁ ସୁଖ ବା ପାଉଛନ୍ତି? ଯେଉଁ କନ୍ୟା ସ୍ୱୟଂବର କରେ, ସେ ନିଜ ଦାୟିତ୍ୱରେ ତାହା କରେ। ପିତା କନ୍ୟାର ହିତାକାଂକ୍ଷୀ। ସେ କନ୍ୟା ପାଇଁ ବର ବାଛିବା ଦ୍ୱାରା ସମସ୍ତ ଦାୟିତ୍ୱ ନିଅନ୍ତି ଏବଂ କନ୍ୟାର କୌଣସି ସାଧାରଣ ଭୁଲ୍ ଥିଲେ କ୍ଷମା ମିଳିଯାଏ। ପରନ୍ତୁ ସ୍ୱୟଂବର କରୁଥିବା କନ୍ୟା ନିଜେ ବିବାହ କରିସାରି କୌଣସି ଦୁଃଖରେ ପଡିଲେ, ସବୁ ଦାୟିତ୍ୱ ସେ ନିଜେ ବହନ କରେ। ଜନ୍ମିତ ପୁତ୍ର ଅପେକ୍ଷା ଦତ୍ତକ ପୁତ୍ର ପିତାମାତାଙ୍କ ସେବା ନ କଲେ ଅଧିକ ଦୋଷୀ ହୁଏ। ନିଯୁକ୍ତ ଭୃତ୍ୟ ଆଜ୍ଞା ପାଳନ ନ କଲେ ଅଥବା ଗୁରୁଙ୍କ ଠାରୁ ଦୀକ୍ଷା ନେଇ ଶିଷ୍ୟ ତାଙ୍କ ଉପଦେଶ ନ ଶୁଣିଲେ ଅଧିକ ଅପରାଧୀ ହୁଏ। କାରଣ ଏମାନେ ନିଜେ ଜାଣି ଜାଣି ଯଥୋଚିତ କର୍ତ୍ତବ୍ୟ ସ୍ୱୀକାର କରି ପୁଣି ତାହାକୁ ଭଙ୍ଗ କରୁଛନ୍ତି। ଅତଏବ ସ୍ୱୟଂବର କରୁଥିବା କନ୍ୟାର ଦାୟିତ୍ୱ ଯଥେଷ୍ଟ ଅଧିକ।

**ପ୍ରଶ୍ନ**—କନ୍ୟା ବିବାହ ନ କରି ସାଧନ-ଭଜନରେ ଜୀବନ କଟାଇଲେ, ତାହା ଯଥାର୍ଥ ହେବ କି?

**ଉତ୍ତର**—ବିବାହ ନ କରିବା କନ୍ୟା ପକ୍ଷରେ ଉଚିତ ନୁହେଁ; କାରଣ ବିବାହ ନ କରି ଜୀବନନିର୍ବାହ କରିବା ତା' ପକ୍ଷରେ କଠିନ। ମାତାପିତା ଥିବାପର୍ଯ୍ୟନ୍ତ ଚଳିଯାଏ, କିନ୍ତୁ ମାତାପିତାଙ୍କ ମୃତ୍ୟୁପରେ ଭାଇମାନେ ସ୍ତ୍ରୀ କଥାରେ ପଡ଼ି ଭଉଣୀକୁ ସେତେ ଆଦର ସ୍ନେହ କରନ୍ତି ନାହିଁ। ଭାଉଜମାନେ ମଧ୍ୟ ହତାଦର କରନ୍ତି। କନ୍ୟା ବେଳେବେଳେ ନିଜକୁ ଅସହାୟ ମନେକରେ। ତେଣୁ ବିବାହ କରିବା ଭଲ।

ମୁଁ ଏପରି କେତେକ ବିବାହିତ ସ୍ତ୍ରୀ-ପୁରୁଷଙ୍କୁ ଦେଖିଅଛି, ଯେଉଁମାନେ ଶାରୀରିକ ସମ୍ବନ୍ଧ ନ ରଖି, କେବଳ ସାଧନ-ଭଜନ କରିବା ପାଇଁ ବିବାହ ପୂର୍ବରୁ ପ୍ରତିଜ୍ଞା କରି

ତାହା ପାଳନ କରିଛନ୍ତି। ଆଜିକାଲି ଏପରି ଲୋକ ମିଳିବା ଦୁଷ୍କର, କିନ୍ତୁ ଅସମ୍ଭବ ନୁହେଁ।

ଅବଶ୍ୟ ମୀରାବାଈଙ୍କ ଭଳି ବାଲ୍ୟକାଳରୁ ହିଁ ଭଜନ ସ୍ମରଣରେ ସଂଲଗ୍ନ ହୋଇଯିବା ଭିନ୍ନ କଥା। କିନ୍ତୁ ଏହା ବିଧାନ ନୁହେଁ, ଭାବ ଅଟେ। ଭାବରେ ଥାଇ ମଧ୍ୟ ମୀରାବାଈଙ୍କୁ ବହୁତ କଠିନତାର ସମ୍ମୁଖୀନ ହେବାକୁ ପଡ଼ିଥିଲା। କେବଳ ପ୍ରଭୁଙ୍କ ଠାରେ ଦୃଢ଼ ବିଶ୍ୱାସ ରଖିଥିବାରୁ ସେ ସମସ୍ତ ଦୁଃଖକଷ୍ଟକୁ ଅତିକ୍ରମ କରିଗଲେ। ଏପରି ଦୃଢ଼ବିଶ୍ୱାସ ଖୁବ୍ କମ୍ ଲୋକଙ୍କର ହୁଏ। ଏପରି ଭକ୍ତ ବିବାହ କରନ୍ତୁ ବା ନ କରନ୍ତୁ କିଛି ଯାଏ ଆସେ ନାହିଁ। ଶ୍ରଦ୍ଧା ଓ ବିଶ୍ୱାସ ଦୃଢ଼ ଥିଲେ ମନୁଷ୍ୟ ଯେଉଁଠାରେ ରହି ସୁଦ୍ଧା ଶ୍ରେଷ୍ଠ ହୋଇ ପାରିବ।

**ପ୍ରଶ୍ନ**—ନାରୀପକ୍ଷେ ସାଧ୍ୱୀ ବା ସନ୍ନ୍ୟାସିନୀ ହେବା ଉଚିତ କି?

**ଉତ୍ତର**—ପୁରୁଷ ବୈରାଗ୍ୟ କାରଣରୁ ଭଜନ-ସ୍ମରଣ ପାଇଁ ସବୁକିଛି ତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରନ୍ତି। ସ୍ତ୍ରୀ ପାଇଁ ଏପରି ଅଧିକାର ଥିବା ମୁଁ କେଉଁଠାରେ ଦେଖି ନାହିଁ। ତେଣୁ ସ୍ତ୍ରୀ ପକ୍ଷେ ସନ୍ନ୍ୟାସିନୀ ହେବା ଉଚିତ ନୁହେଁ। ସେ ଗୃହରେ ରହି ଜିତେନ୍ଦ୍ରିୟ ହୋଇ ତ୍ୟାଗମୟ ଜୀବନ ଯାପନ କରି ପାରନ୍ତି। ପ୍ରକୃତପକ୍ଷରେ ତ୍ୟାଗ ଓ ବୈରାଗ୍ୟ ଯେ କେବଳ ସାଧୁବେଶରେ ହିଁ ସମ୍ଭବ, ତା' ନୁହେଁ। ଯାହାଙ୍କ ହୃଦୟରେ ପଦାର୍ଥ ପ୍ରତି ଦାସତ୍ୱ ନାହିଁ, ସେ ଗୃହରେ ଥାଇ ସୁଦ୍ଧା ସନ୍ନ୍ୟାସିନୀ ଅଟନ୍ତି।

**ପ୍ରଶ୍ନ**—ପତିବ୍ରତା, ସାଧ୍ୱୀ ଓ ସତୀ କାହାକୁ କହନ୍ତି?

**ଉତ୍ତର**—ସାଧାରଣତଃ ଶବ୍ଦାର୍ଥ ଦୃଷ୍ଟିରୁ ତିନୋଟିଯାକର ଅର୍ଥ ସମାନ। ତଥାପି ପତି ଜୀବିତ ଥିବା ସମୟରେ ଯେଉଁ ସ୍ତ୍ରୀ ନିୟମରେ ଦୃଢ଼ ରହନ୍ତି, ସେ 'ପତିବ୍ରତା'। ପତିଙ୍କ ମୃତ୍ୟୁପରେ ମଧ୍ୟ ଯେ ନୀତିନିୟମ ଓ ତ୍ୟାଗରେ ଦୃଢ଼ ରହନ୍ତି, ସେ 'ସାଧ୍ୱୀ'। ଯେ ସତ୍ୟପାଳନ କରନ୍ତି, ଯାହାଙ୍କର ପତିଙ୍କ ସହ ଦୃଢ଼ ସମ୍ବନ୍ଧ ଥାଏ କିଂବା ଯିଏ ପତିଙ୍କ ମୃତ୍ୟୁପରେ ତାଙ୍କ ସହିତ ସତୀ ହୁଅନ୍ତି, ସେ 'ସତୀ'।

**ପ୍ରଶ୍ନ**—ସତୀପ୍ରଥା ଉଚିତ କି?

**ଉତ୍ତର**—ସତୀ ହେବା କୌଣସି ପ୍ରଥା ନୁହେଁ। ସ୍ୱାମୀଙ୍କ ଚିତାରେ ଦଗ୍ଧ ହେବା ସତୀ ହେବା ନୁହେଁ। ଯାହାଙ୍କ ମନରେ ସତ୍ ଓ ଉତ୍ସାହ ଆସିଯାଏ, ସେ ଅଗ୍ନି ନ ଥାଇ ବି ଜଳି ଯାଆନ୍ତି। ଜଳିବାରେ ତାଙ୍କୁ କଷ୍ଟ ଅନୁଭୂତ ହୁଏ ନାହିଁ। ସତୀ ହେବା କୌଣସି ପ୍ରଥା ନୁହେଁ ଯେ ଏଭଳି କରିବା ନିହାତି ଆବଶ୍ୟକ। ଏହା କେବଳ ଧର୍ମ, ସତ୍ୟ ଓ ଶାସ୍ତ୍ରମର୍ଯ୍ୟାଦା ଉପରେ ଅଟଳ ବିଶ୍ୱାସର ନାମ ଅଟେ।

ହରଦୋଇ ଜିଲ୍ଲାର ଇକନୋରା ଗ୍ରାମରେ ଗୋଟିଏ ଝିଅ ମାମୁଁ ଘରେ ଥିବାବେଳେ

ତା' ସ୍ୱାମୀର ମୃତ୍ୟୁସଂବାଦ ଶୁଣି ସେ ସତୀ ହେବା ପାଇଁ କହିଲା । ମାମୁଁ ତାକୁ ସେଥିରୁ ବାରଣ କଲେ; କାଠ ଓ ନିଆଁ ମାଗିବାରୁ ଦେଲେ ନାହିଁ । ସେ ଦୀପ ଲଗାଇ ନିଜ ଅଙ୍ଗୁଳିକୁ ନିଆଁରେ ରଖିବାରୁ ଅଙ୍ଗୁଳିଟି ମହମବତୀ ପରି ଜଳିଲା । ସେ ତା' ମାମୁଁଙ୍କୁ କହିଲା, ସତୀ ହେବା ପାଇଁ ଅନୁମତି ନ ଦେଲେ ତୁମ ଘର ପୋଡ଼ି ଭସ୍ମ ହୋଇଯିବ । ମାମୁଁ ଅନୁମତି ଦେବାରୁ ସେ କାନ୍ଥରେ ଘଷି ଅଙ୍ଗୁଳିରୁ ନିଆଁ ଲିଭାଇଲା ଓ ବାହାରକୁ ଯାଇ ଗୋଟିଏ ଗଛ ତଳେ ଠିଆ ହୋଇ ଭଗବାନ ସୂର୍ଯ୍ୟଙ୍କୁ ବିକଳ ହୋଇ କହିଲା, ଭଗବାନ! ମୋତେ ନିଆଁ ଦିଅ । ଏପରି କହୁ କହୁ ସେ ଆପେ ଆପେ ଜଳିଗଲା । ଗ୍ରାମଲୋକେ ଏହା ଆଖି ଆଗରେ ଦେଖିଛନ୍ତି । ସେଠାକାର ମୁସଲମାନ ଭାଇମାନେ ମଧ୍ୟ ଏହି ଘଟଣାକୁ ସତ୍ୟ ବୋଲି କହନ୍ତି । ସ୍ୱାମୀ କରପାତ୍ରୀଜୀ ସେହି ଗ୍ରାମକୁ ଯାଇ କାନ୍ଥରେ ଅଙ୍ଗୁଳିର କଳାଗାର ଦେଖିଥିଲେ ଓ ଜଳି ଯାଇଥିବା ଡାଳ ଦେଖିଥିଲେ । ପରନ୍ତୁ ଏହା ସତୀପ୍ରଥା ନୁହେଁ । ଏହା ନିଜର ଧାର୍ମିକ ଉତ୍ସାହ । ଏ ବିଷୟରେ ପ୍ରଭୁଦତ୍ତ ବ୍ରହ୍ମଚାରୀଙ୍କ ଦ୍ୱାରା ହିନ୍ଦୀରେ ଲିଖିତ 'ସତୀଧର୍ମ ହିନ୍ଦୁଧର୍ମର ମେରୁଦଣ୍ଡ'* ପୁସ୍ତକ ପାଠକମାନେ ପଢ଼ି ପାରନ୍ତି ।

**ପ୍ରଶ୍ନ**—ପତିବ୍ରତାର ବିଶ୍ୱାସ ଓ ଆଚରଣ କିପରି ହୋଇଥାଏ?

**ଉତ୍ତର**—ଧାର୍ମିକ ବିଶ୍ୱାସର ପ୍ରବଳତା ଯୋଗୁଁ ପତ୍ନୀ ତନମନ ଦେଇ ପତିଙ୍କର ସେବା କରେ । ପତିଙ୍କ ମନ ସହିତ ନିଜ ମନ ମିଳାଇ ସେ ନିରନ୍ତର ପ୍ରସନ୍ନ ରହେ । ସେ ନିଜର କିଛି ସ୍ୱତନ୍ତ୍ର ଇଚ୍ଛା ରଖେ ନାହିଁ । ତା'ର ମନ ସବୁବେଳେ ପତିଙ୍କ ସହ ସଂଲଗ୍ନ ଥାଏ । ଏହି ପାତିବ୍ରତ୍ୟ ତାକୁ ସବୁବେଳେ ରକ୍ଷା କରେ । ପ୍ରାୟ ପୂର୍ବଜନ୍ମର ପତିଙ୍କ ସହିତ ହିଁ ପତିବ୍ରତାର ଇହଜନ୍ମରେ ସମ୍ବନ୍ଧ ହୁଏ । ଅଥବା ବାଲ୍ୟକାଳରେ ସୁଶିକ୍ଷା ଓ ସୁସଂସ୍କାର ଯୋଗୁଁ ମଧ୍ୟ କନ୍ୟା ବିବାହିତ ଜୀବନରେ ପତିବ୍ରତା ହୁଏ ।

**ପ୍ରଶ୍ନ**—ପତିବ୍ରତାକୁ କିପରି ଚିହ୍ନିବା?

**ଉତ୍ତର**—ପତିବ୍ରତାର ଗୃହରେ ସର୍ବଦା ଶାନ୍ତି ବିରାଜୁଥାଏ । ଘରେ ସମସ୍ତେ ନିଜ ନିଜ ଧର୍ମ ପାଳନ କରନ୍ତି । ସନ୍ତାନମାନେ ମାତାପିତାଙ୍କୁ ଭକ୍ତି କରନ୍ତି । ପଡ଼ୋଶୀମାନଙ୍କ ଉପରେ ଓ ସାରା ଗାଁରେ ତାଙ୍କ ଆଚରଣର ପ୍ରଭାବ ପଡ଼େ । ତାଙ୍କୁ ଦେଖିବା ମାତ୍ରେ ସାମୟିକ ଦୁର୍ଭାବନା ଦୂର ହୋଇ ଅନ୍ତରରୁ ଉତ୍ତମ ଭାବନା ଜାଗ୍ରତ ହୁଏ । କିନ୍ତୁ ଯେଉଁମାନେ ସ୍ୱଭାବତଃ ଦୁଷ୍ଟ, ସେମାନଙ୍କ ଉପରେ ତାଙ୍କର ପ୍ରଭାବ ପଡ଼େ ନାହିଁ । ଉଦାହରଣସ୍ୱରୂପ—ଜଣେ ବ୍ୟାଧ ଅଜଗର ସାପର ମୁହଁରୁ

* ଏ ପୁସ୍ତକ ମିଳିବାର ଠିକଣା—ସଂକୀର୍ତ୍ତନ ଭବନ, ଧାର୍ମିକ ଟ୍ରଷ୍ଟ, ପ୍ରତିଷ୍ଠାନପୁର (ଝୁସୀ), ଆହ୍ଲାବାଦ ।

ଦମୟନ୍ତୀଙ୍କୁ ରକ୍ଷା କରିବା ବେଳେ ତାଙ୍କ ରୂପ ଦେଖି ମୁଗ୍ଧ ହୋଇଗଲା । ତା' ମନରେ ଦୁର୍ଭାବନା ସୃଷ୍ଟି ହେଲା । ଏଣୁ ଦମୟନ୍ତୀଙ୍କ ଅଭିଶାପରେ ସେ ଭସ୍ମ ହୋଇଗଲା । ଯୁଧିଷ୍ଠିର ଧର୍ମାତ୍ମା ଥିଲେ ସୁଦ୍ଧା ଦୁଷ୍ଟ ଦୁର୍ଯ୍ୟୋଧନ ଉପରେ ତାଙ୍କର କୌଣସି ପ୍ରଭାବ ପଡ଼ିଲା ନାହିଁ ।

**ପ୍ରଶ୍ନ**—ବର୍ତ୍ତମାନ ସମୟରେ ପତିବ୍ରତା ଧର୍ମ ପାଳନ କରାଯାଇ ପାରିବ କି?

**ଉତ୍ତର**—ଏଥିପାଇଁ ସମୟ କିଛି ବିଘ୍ନ ସୃଷ୍ଟି କରେ ନାହିଁ । ଧର୍ମ ପାଳନରେ ସମସ୍ତଙ୍କର ସ୍ୱାଧୀନତା ରହିଛି । ପ୍ରକୃତ ପକ୍ଷରେ କେବଳ ଧର୍ମବିରୁଦ୍ଧ କାର୍ଯ୍ୟ କରିବାରେ ଶାସ୍ତ୍ର, ଧର୍ମ, ମର୍ଯ୍ୟାଦା ପ୍ରଭୃତି ବିରୋଧ କରନ୍ତି ।

**ପ୍ରଶ୍ନ**—ପତି ପତ୍ନୀକୁ ତ୍ୟାଗ କରିପାରିବ କି?

**ଉତ୍ତର**—ଦେଖାଯାଏ, ପତ୍ନୀ ଗୁଣବତୀ ଓ ସୁଶୀଳା ହେଲେ ସୁଦ୍ଧା ରୂପବତୀ ହୋଇ ନ ଥିଲେ ଅଥବା ମାଆ କଥା ମାନୁ ନ ଥିଲେ, ମାଆର ପ୍ରରୋଚନାରେ ପତି ପତ୍ନୀକୁ ଛାଡ଼ିଦିଏ । ଏହା ମହାପାପ । ଯେଉଁ ପତି ପତ୍ନୀର ଦୋଷ ଦେଖେ, ସେ ସ୍ୱୟଂ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ କି?

**ପ୍ରଶ୍ନ**—ପତ୍ନୀ ଦୁଶ୍ଚରିତ୍ରା ଓ ବ୍ୟଭିଚାରିଣୀ ହୋଇଥିଲେ ତାହାକୁ ପରିତ୍ୟାଗ କରିବା ଉଚିତ କି?

**ଉତ୍ତର**—ଯେତେଦୂର ସମ୍ଭବ, ପତ୍ନୀକୁ ପରିତ୍ୟାଗ କରିବା ଉଚିତ ନୁହେଁ । ନିଜ ସାମର୍ଥ୍ୟ ଅନୁସାରେ ତାକୁ ଶାସନ କରିବା ଓ ତା'ର ସ୍ୱଭାବ ବଦଳାଇବାକୁ ଚେଷ୍ଟା କରିବା ଉଚିତ । ଦଣ୍ଡ ଦେବାକୁ ହେଲେ ତାହା ସହିତ କଥାବାର୍ତ୍ତା କରିବ ନାହିଁ ଓ ତା' ହାତରୁ ଅନ୍ନଜଳ ଗ୍ରହଣ କରିବ ନାହିଁ ।

**ପ୍ରଶ୍ନ**—ସ୍ୱାମୀର ଅଧା ପୁଣ୍ୟ ସ୍ତ୍ରୀକୁ ଓ ସ୍ତ୍ରୀର ଅଧା ପାପ ସ୍ୱାମୀକୁ ମିଳେ । ଏପରି କାହିଁକି ହୁଏ?

**ଉତ୍ତର**—ସ୍ତ୍ରୀ ମାତାପିତା, ଘରଦ୍ୱାର ତ୍ୟାଗ କରି ସ୍ୱାମୀ ଗୃହକୁ ଆସେ । ତ୍ୟାଗରୁ ହିଁ ପୁଣ୍ୟ ମିଳେ । ସେ ନିଜ ଗୋତ୍ର ତ୍ୟାଗ କରିବା ସହ ନିଜ ମନକୁ ସ୍ୱାମୀର ମନ ସଙ୍ଗେ ମିଶାଇଦିଏ । ତେଣୁ ସ୍ତ୍ରୀ ପୁଣ୍ୟର ଅଧିକାରିଣୀ । ସ୍ୱାମୀ ସନ୍ଧ୍ୟା, ଗାୟତ୍ରୀ ଆଦି ଅନୁଷ୍ଠାନ କଲେ ସେହି ପୁଣ୍ୟର ଅଧା ସ୍ତ୍ରୀକୁ ମିଳେ । ଏଣୁ ସ୍ୱାମୀ ଦୁଇ ସଙ୍ଗାଡ଼ି ପଇତା ପିନ୍ଧେ । ଗୋଟିଏ ନିଜର ଓ ଅନ୍ୟଟି ସ୍ତ୍ରୀର ।

ବାଲ୍ୟକାଳରେ କନ୍ୟା ମାତାପିତାଙ୍କ ଠାରୁ ଶିକ୍ଷା ଲାଭ କରେ । ବିବାହ ପରେ ଶିକ୍ଷା ଦେବାର ଦାୟିତ୍ୱ ସ୍ୱାମୀର । ସ୍ୱାମୀଠାରୁ ଉତ୍ତମ ଶିକ୍ଷା ନ ପାଇ ସେ ଦୋଷ କଲେ ସେହି ଦୋଷର ଅଧାଭାଗ ସ୍ୱାମୀକୁ ମିଳେ । ସ୍ୱାମୀ ଶିକ୍ଷା ଦେଇଥିଲେ ସୁଦ୍ଧା

ସ୍ତ୍ରୀ ଯଦି ପାପ କରେ, ସ୍ୱାମୀକୁ ସେ ଦୋଷ ଲାଗେ ନାହିଁ। ସ୍ତ୍ରୀ ସ୍ୱାମୀର କଥା ମାନିଲେ ଅଧାପୁଣ୍ୟର ଅଧିକାରିଣୀ ହୁଏ, କଥା ନ ମାନିଲେ ସ୍ୱାମୀର ପୁଣ୍ୟରେ ସେ ଅଧିକାରିଣୀ ନୁହେଁ।

**ପ୍ରଶ୍ନ**—ବିଧର୍ମୀମାନେ କୌଣସି ସ୍ତ୍ରୀକୁ ଅପହରଣ କରିନେଲେ ସେହି ସ୍ତ୍ରୀ କ'ଣ କରିବ?

**ଉତ୍ତର**—ସେହି ସ୍ତ୍ରୀ ବିଧର୍ମୀଙ୍କ ଠାରୁ କୌଣସି ଉପାୟରେ ଉଦ୍ଧାର ପାଇବା ପାଇଁ ଚେଷ୍ଟା କରିବ। ତାହା ସମ୍ଭବ ନ ହେଲେ ପ୍ରଭୁଙ୍କୁ ସ୍ମରଣ କରିବ। ଭଗବାନ କୌଣସି ନା କୌଣସି ଉପାୟରେ ସେଠାରୁ ମୁକ୍ତ କରିଦେବେ।

ଥରେ ବିଧର୍ମୀମାନେ ଜଣେ ସ୍ତ୍ରୀଲୋକର ମୁହଁରେ କନାବିଣ୍ଡା ଦେଇ ଓ ହାତଗୋଡ଼ ବାନ୍ଧି ଅଖାରେ ଭର୍ତ୍ତିକରି ରେଳରେ ଅପହରଣ କରି ନେଇଯାଉଥିଲେ। ସେହି ସ୍ତ୍ରୀଲୋକଟି ଟି. ଟି. ଆଇକୁ ଦେଖି ନିଜ ପାଦରେ ତାହାର ପାଦକୁ ଦବାଇ ଦେଲା। ଟି.ଟି.ଆଇ ବିଧର୍ମୀଙ୍କ ଷଡଯନ୍ତ୍ର ବୁଝିପାରି ତାକୁ ଉଦ୍ଧାର କଲେ। ଏହା ଲକ୍ଷ୍ନୌ ଷ୍ଟେସନର ଘଟଣା। ନୋଆଖାଲିରେ ଜଣେ ବିଧର୍ମୀ ଗୋଟିଏ ସ୍ତ୍ରୀକୁ ଅପହରଣ କରିବାବେଳେ ସ୍ତ୍ରୀ ଲୋକଟି ପ୍ରଭୁଙ୍କୁ ସ୍ମରଣ କଲା। କିଛି ସମୟ ପରେ ଆଉ ଜଣେ ବିଧର୍ମୀ ସେଠାରେ ପହଞ୍ଚିଗଲା। ତାକୁ ନେବା ପାଇଁ ପରସ୍ପର ମଧ୍ୟରେ ହିଂସା ଓ କଳହ କରି ଉଭୟେ ମରିଗଲେ।

**ପ୍ରଶ୍ନ**—ଯେଉଁ ସ୍ତ୍ରୀକୁ ବିଧର୍ମୀମାନେ ନେଇଯାଆନ୍ତି, ତାହାର ସ୍ୱାମୀ କ'ଣ କରିବ?

**ଉତ୍ତର**—ନିଜର ସାମର୍ଥ୍ୟ ଥିଲେ ଓ ସ୍ତ୍ରୀର ଇଚ୍ଛା ଥିଲେ ସ୍ୱାମୀ ତାକୁ ଉଦ୍ଧାର କରି ଘରକୁ ନେଇ ଆସିବ। ହୁଏତ ତା'ର ପାତିବ୍ରତ୍ୟ ନଷ୍ଟ ହୋଇ ସାରିଥିବ, କିନ୍ତୁ ତା'ର ଧର୍ମ ନଷ୍ଟ ହେବ ନାହିଁ। ବାଧ୍ୟ କରି କେହି କାହାକୁ ଧର୍ମଭ୍ରଷ୍ଟ କରିପାରେ ନାହିଁ। ନିଜ ଇଚ୍ଛାରେ ଧର୍ମ ଛାଡ଼ିଲେ ହିଁ ଧର୍ମ ନଷ୍ଟ ହୁଏ। ତେଣୁ ଅପହୃତା ସ୍ତ୍ରୀକୁ ଉଦ୍ଧାର କରି ଆଣି ତାକୁ ଗଙ୍ଗାଜଳରେ ସ୍ନାନ କରାଇ ଶୁଦ୍ଧ କରିବ। ଗୀତା, ରାମାୟଣ, ଭାଗବତ ଆଦି ପଢ଼ାଇବ। ଏସବୁ କରିବା ପରେ ଯେବେ ସେ ରଜସ୍ୱଳା ହେବ, ସେତେବେଳେ ଶୁଦ୍ଧ ହେଲା ବୋଲି ଜାଣିବ—**'ରଜସା ଶୁଦ୍ଧ୍ୟତେ ନାରୀ'**।

ଜମଦଗ୍ନି ଋଷିଙ୍କର ପତ୍ନୀ ରେଣୁକା ପତିବ୍ରତା ଥିବାରୁ ପିନ୍ଧାବସନରେ ଜଳ ଭର୍ତ୍ତି କରି ଆଣି ପାରୁଥିଲେ। ନଦୀକୂଳରେ ଦିନେ କୌଣସି ପୁରୁଷର ଗୋଟିଏ ସ୍ୱର୍ଣ୍ଣକାନ୍ତିଯୁକ୍ତ ସୁନ୍ଦର ବାଳ ପଡ଼ିଥିବାର ଦେଖି ସେହି ପୁରୁଷ କେତେ ସୁନ୍ଦର

ହୋଇଥିବ ବୋଲି ମନରେ ଭାବିଲେ । ତେଣୁ ତାଙ୍କ ଧର୍ମ ନଷ୍ଟ ହେଲା ଓ ପୂର୍ବପରି ସେ ବସ୍ତ୍ରରେ ଜଳ ଆଣି ପାରିଲେ ନାହିଁ ।

ଇନ୍ଦ୍ର ଗୌତମ ଋଷିଙ୍କ ରୂପ ଧାରଣ କରି ଅହଲ୍ୟାଙ୍କୁ ଭ୍ରଷ୍ଟ କରିଥିଲେ । ଗୌତମ କ୍ରୋଧରେ ଅଭିଶାପ ଦେଇ ଅହଲ୍ୟାଙ୍କୁ ପଥର କରିଦେଲେ ସିନା, ଭଗବାନ ରାମଙ୍କ କୃପାରୁ ସେ ଉଦ୍ଧାର ପାଇଗଲେ । ତାଙ୍କର ଏକପତିବ୍ରତ ନଷ୍ଟ ହୋଇଥିଲା ସତ, କିନ୍ତୁ ସେ ଧର୍ମଭ୍ରଷ୍ଟ ହୋଇ ନ ଥିଲେ । ସେ ନିଜ ଧର୍ମରେ ଅଟଳ ଥିଲେ ।

ଗୀତାପ୍ରେସର ସଂସ୍ଥାପକ ଶ୍ରୀ ଜୟଦୟାଲ ଗୋୟନ୍ଦକା ଶୁଦ୍ଧତା ଓ ପବିତ୍ରତା ରକ୍ଷା ଦିଗରେ ବହୁତ ଧ୍ୟାନ ଦେଉଥିଲେ । କିନ୍ତୁ ସେ ମଧ୍ୟ କହିଥିଲେ ଯେ ବିଧର୍ମୀଙ୍କ ଦ୍ୱାରା ଜବରଦସ୍ତି ବଳାତ୍କୃତ ସ୍ତ୍ରୀମାନଙ୍କର ଧର୍ମ ନଷ୍ଟ ହୁଏ ନାହିଁ । ସେମାନେ ହିନ୍ଦୁଧର୍ମକୁ ଫେରିବାକୁ ଚାହୁଁଥିଲେ ସେମାନଙ୍କୁ ଆଣି ଗଙ୍ଗାସ୍ନାନ ଓ ଗୀତା ରାମାୟଣ ପାଠ ଦ୍ୱାରା ଶୁଦ୍ଧ କରିବା ଉଚିତ । ସେ ଏ କଥା ମଧ୍ୟ କହୁଥିଲେ ଯେ ଅନ୍ୟ ଧର୍ମାବଲମ୍ବୀମାନେ ମଧ୍ୟ ହିନ୍ଦୁ ପଦ୍ଧତିରେ ଜପ-ଧ୍ୟାନ, ପୂଜା-ପାଠ କରି ହିନ୍ଦୁ ହୋଇ ପାରିବେ ।

**ପ୍ରଶ୍ନ**—ପତ୍ନୀ ନିଜ ଇଚ୍ଛାରେ କେଉଁଆଡ଼େ ଚାଲିଯାଇ ପୁଣି ଫେରିଲେ କ'ଣ କରାଯିବ?

**ଉତ୍ତର**—ତାକୁ ନିଜର ପତ୍ନୀ ବୋଲି ମାନିବେ ନାହିଁ ଏବଂ ତା' ସହିତ ପତି-ପତ୍ନୀ ପରି ବ୍ୟବହାର କରିବେ ନାହିଁ । ସନ୍ଥ କୁବାଜୀଙ୍କ ପତ୍ନୀ ତାଙ୍କୁ ଛାଡ଼ି ଚାଲିଗଲେ । ଅନ୍ୟ ପତି ଗ୍ରହଣ କଲେ । ସେଠାରେ ତାଙ୍କର ସନ୍ତାନ ମଧ୍ୟ ହେଲେ । ପରନ୍ତୁ ସେ ପତି ମରିଗଲେ । ତାଙ୍କର ଜୀବନ ନିର୍ବାହ କଠିନ ହୋଇ ପଡ଼ିଲା । ସେ ପୁନଃ କୁବାଜୀଙ୍କ ନିକଟକୁ ଫେରି ଆସିଲେ । କୁବାଜୀ ତାଙ୍କ ପାଇଁ ଅନ୍ନ, ଜଳ, ବସ୍ତ୍ର ଆଦିର ବ୍ୟବସ୍ଥା କରିଦେଲେ, କିନ୍ତୁ ପତ୍ନୀରୂପେ ସ୍ୱୀକାର କଲେ ନାହିଁ ।

**ପ୍ରଶ୍ନ**—ପତି ଦୁଶ୍ଚରିତ୍ର ହେଲେ ପତ୍ନୀ କ'ଣ କରିବ?

**ଉତ୍ତର**—ପତି ଦୁଶ୍ଚରିତ୍ର ହେଲେ ପତ୍ନୀ ତାଙ୍କୁ ପରିତ୍ୟାଗ କରିବ ନାହିଁ । ନିଜ ପତିବ୍ରତା ଧର୍ମ ପାଳନ କରି ପତିଙ୍କୁ ବୁଝାଇବ । ମନ୍ଦୋଦରୀ ରାବଣକୁ ବୁଝାଇଥିଲେ, କିନ୍ତୁ ତାକୁ ପରିତ୍ୟାଗ କରି ନ ଥିଲେ ।

ବିବାହ ସମୟରେ ସ୍ତ୍ରୀ-ପୁରୁଷ ନିଜ ନିଜ କର୍ତ୍ତବ୍ୟ ପାଇଁ ପ୍ରତିଜ୍ଞାବଦ୍ଧ ହୁଅନ୍ତି । ସେଦୃଷ୍ଟିରୁ ପତିଙ୍କୁ ସତ୍‌ପରାମର୍ଶ ଦେବା ପାଇଁ ପତ୍ନୀର ଅଧିକାର ରହିଛି । ଗାନ୍ଧାରୀ ଏତେ ପତିବ୍ରତା ଥିଲେ ଯେ ବିବାହ ପୂର୍ବରୁ ସ୍ୱାମୀ ଅନ୍ଧ ବୋଲି ଜାଣି ସେ ନିଜ ଆଖିରେ ମଧ୍ୟ ପଟି ବାନ୍ଧି ଦେଇଥିଲେ । ସ୍ୱାମୀ ତାଙ୍କ ଜୀବନରେ ନେତ୍ରସୁଖ

ଅନୁଭବ କରୁ ନ ଥିବାରୁ ସେ ନିଜେ ମଧ୍ୟ ନେତ୍ରସୁଖ ଗ୍ରହଣ କରି ନ ଥିଲେ। ତଥାପି ସେ ଧୃତରାଷ୍ଟ୍ରଙ୍କୁ ଉତ୍ତମ ପରାମର୍ଶ ଦେଉଥିଲେ। ଦୁର୍ଯ୍ୟୋଧନର ଅସତ୍‌କର୍ମକୁ ସମ୍ମତି ଦେଇ କୁଳନାଶ ନ କରିବା ପାଇଁ ତାଙ୍କୁ ପ୍ରେରଣା ଦେଇଥିଲେ। ଧୃତରାଷ୍ଟ୍ର ତାଙ୍କ କଥା ନ ଶୁଣିବାରୁ କୁରୁବଂଶ ଧ୍ୱଂସ ହେଲା।

ଶାସ୍ତ୍ରରେ କୁହାଯାଇଛି ଯେ ମନପ୍ରାଣ ଦେଇ ସ୍ୱାମୀର ସେବା କରିଥିବା ଓ ନିଜ ଧର୍ମ ପାଳନ କରିଥିବା ପତିବ୍ରତା ନାରୀ ମୃତ୍ୟୁପରେ ପତିଲୋକକୁ (ପତିଙ୍କ ନିକଟକୁ) ଯାଏ। ଦୁଶ୍ଚରିତ୍ର ପତି ନରକଗାମୀ ହେବା କଥା; ପରନ୍ତୁ ତାହାର ସ୍ତ୍ରୀ ଶାସ୍ତ୍ର, ଭଗବାନ ଓ ସନ୍ଥ ମହାତ୍ମାଙ୍କ ଆଦେଶାନୁସାରେ ପାତିବ୍ରତ୍ୟ ପାଳନ କରିଥିବାରୁ ସ୍ତ୍ରୀ ନରକକୁ ନ ଯାଇ ବରଂ ସ୍ୱାମୀକୁ ନରକରୁ ଉଦ୍ଧାର କରେ। ଅର୍ଥାତ୍ ସ୍ତ୍ରୀ ଯେଉଁ ସ୍ୱର୍ଗାଦି ଲୋକକୁ ଯାଏ, ସ୍ୱାମୀ ମଧ୍ୟ ସେଠାକୁ ଯାଏ।

**ପ୍ରଶ୍ନ**—ସ୍ୱାମୀ ସ୍ତ୍ରୀକୁ ବ୍ୟଭିଚାର ପାଇଁ ପ୍ରେରିତ କଲେ ସ୍ତ୍ରୀ କଅଣ କରିବ?

**ଉତ୍ତର**—ସ୍ତ୍ରୀକୁ ଅନ୍ୟ କାହାରିକୁ ଦେବାର ଅଧିକାର ସ୍ୱାମୀର ନାହିଁ, କାରଣ କନ୍ୟାପିତା ତାକୁ ଏ ଦାନ ଦେଇଛନ୍ତି। ଅନ୍ନବସ୍ତ୍ର ଆଦି ଦାନ ନେଉଥିବା ବ୍ୟକ୍ତି, ସେସବୁ ଦାନ ଦ୍ରବ୍ୟକୁ ପୁନର୍ବାର ଅନ୍ୟ କାହାକୁ ଦେଇପାରେ, ପରନ୍ତୁ କନ୍ୟାଦାନ ନେବାପରେ ପତ୍ନୀକୁ ଅନ୍ୟ କାହାକୁ ଦେବା ମହାପାପ। ଏପରି ସ୍ଥଳରେ ସ୍ତ୍ରୀ ସ୍ୱାମୀର ଆଜ୍ଞା ଭଙ୍ଗ କଲେ ତାକୁ କୌଣସି ଦୋଷ ଲାଗେ ନାହିଁ। ଅନ୍ୟାୟକୁ ସ୍ୱୀକାର କରିବା ଅନ୍ୟାୟ ଅଟେ। ସ୍ତ୍ରୀ ସ୍ୱାମୀର ଧର୍ମବିରୁଦ୍ଧ ଆଦେଶ ପାଳନ କଲେ ସ୍ୱାମୀ ନରକଗାମୀ ହେବ। ତେଣୁ ସ୍ୱାମୀର କୁତ୍ସିତ ଆଦେଶକୁ ସ୍ତ୍ରୀ କଦାପି ପାଳନ କରିବ ନାହିଁ। ଯଦି ନିଜେ ସ୍ୱାମୀ ଶାସ୍ତ୍ରନିୟମ ବିରୁଦ୍ଧରେ ସ୍ତ୍ରୀସଙ୍ଗ କରେ, ତାହା ଅନ୍ୟାୟ। ଧର୍ମଯୁକ୍ତ ଶୃଙ୍ଗାରକୁ ଭଗବାନ ନିଜର ସ୍ୱରୂପ ବୋଲି କହିଛନ୍ତି—**'ଧର୍ମାବିରୁଦ୍ଧୋ ଭୂତେଷୁ କାମୋଽସ୍ମି ଭରତର୍ଷଭ'** (ଗୀତା ୭।୧୧); ତେଣୁ ଏଥିରେ ଦୋଷ ନାହିଁ। ପରନ୍ତୁ ପତ୍ନୀକୁ ସ୍ୱେଚ୍ଛାରେ ଅଧର୍ମଯୁକ୍ତ କର୍ମରେ ପ୍ରେରିତ କରିବା ଘୋର ଅନ୍ୟାୟ ଅଟେ। ସର୍ବଦା ଶାସ୍ତ୍ରୀୟ ମର୍ଯ୍ୟାଦାରେ ପ୍ରତ୍ୟେକ କର୍ମ କରିବା ଉଚିତ (ଗୀତା ୧୬।୨୪)।

**ପ୍ରଶ୍ନ**—ଯଦି ପତି ମଦ୍ୟ ମାଂସ ସେବନ କରେ, ତା' ହେଲେ ପତ୍ନୀ କଅଣ କରିବ?

**ଉତ୍ତର**—ନିଷିଦ୍ଧ ଆଚରଣରୁ ପତିକୁ ମୁକ୍ତ କରିବା ପତ୍ନୀର ଧର୍ମ ଓ ଅଧିକାର। ପତି ଅଖାଦ୍ୟ ସେବନ କଲେ ସୁଦ୍ଧା ପତ୍ନୀ ନିଜ ଖାଦ୍ୟ-ପେୟ ଶୁଦ୍ଧ ରଖିବ। ସେ ପତିକୁ ସନ୍ମାର୍ଗକୁ ଆଣିବା ପାଇଁ ଶେଷ ପର୍ଯ୍ୟନ୍ତ ଉଦ୍ୟମ କରିବ।

**ପ୍ରଶ୍ନ**—ପତି ମାରପିଟ କରି ଦୁଃଖ ଦେଲେ ପତ୍ନୀ କ'ଣ କରିବ?

**ଉତ୍ତର**—ଏପରି ଅବସ୍ଥାରେ ପତ୍ନୀ ବିଗ୍ୟରିବା ଉଚିତ ଯେ ସେ ନିଜ ପୂର୍ବଜନ୍ମକୃତ କର୍ମର ଫଳ ଭୋଗୁଅଛି। ତା'ର ପାପ କଟୁଅଛି ଓ ସେ ଶୁଦ୍ଧ ହେଉଅଛି। କନ୍ୟା ପକ୍ଷର ଲୋକେ ଜାମାତାର ଦୁର୍ବ୍ୟବହାର କଥା ଶୁଣିଲେ କନ୍ୟାକୁ ନିଜ ଘରକୁ ନେଇଯିବା ଉଚିତ।

**ପ୍ରଶ୍ନ**—କନ୍ୟାଘର ଲୋକେ କନ୍ୟାକୁ ନ ନେଲେ କ'ଣ କରାଯିବ?

**ଉତ୍ତର**—ପତ୍ନୀ ବିଗ୍ୟରୀ ପୂର୍ବକର୍ମର ଫଳ ଭୋଗିବ ଓ ଧୈର୍ଯ୍ୟପୂର୍ବକ ତାଡ଼ନା ସହିବ। ସହିବା ଦ୍ୱାରା ପାପ କଟିଯାଏ। ସମ୍ଭବତଃ ପତିର ମନ ବଦଳି ଯାଇପାରେ। ପତିର ବ୍ୟବହାର ଅସହ୍ୟ ହେଲେ ପତ୍ନୀ ପୃଥକ୍ ରହିବ ଓ ନିଜ ଜୀବିକା ଅର୍ଜନ କରି ନିଶ୍ଚିନ୍ତରେ ଭଗବାନଙ୍କ ଭଜନସ୍ମରଣ କରିବ।

ସ୍ତ୍ରୀ ପ୍ରତି କୌଣସି ପ୍ରକାର ହିଂସା ନ କରିବା ପୁରୁଷର କର୍ତ୍ତବ୍ୟ। ଭୀଷ୍ମଙ୍କୁ ମାରିବା ପାଇଁ ଶିଖଣ୍ଡୀ ଜନ୍ମ ହୋଇଥିଲା। କିନ୍ତୁ ଭୀଷ୍ମ ଜାଣିଥିଲେ ଯେ ସେ ପୂର୍ବଜନ୍ମରେ ନାରୀରୂପରେ ଜନ୍ମ ହୋଇଥିଲା ତଥା ସେହି ଜନ୍ମରେ ମଧ୍ୟ ନାରୀରୂପରେ ଜନ୍ମ ହୋଇଥିଲା; ପରେ ସେ ପୁରୁଷତ୍ୱ ଲାଭ କଲା। ତେଣୁ ଭୀଷ୍ମ ଶିଖଣ୍ଡୀକୁ ନାରୀ ମଣି ତା' ଉପରକୁ ଶର ନିକ୍ଷେପ କଲେ ନାହିଁ।

ବିପତ୍ତିବେଳେ ସ୍ତ୍ରୀ ଧୈର୍ଯ୍ୟ ହରାଇବା ଉଚିତ ନୁହେଁ। ପୂର୍ବ ପାପ କାରଣରୁ ବିପତ୍ତି ଆସେ। ସେତେବେଳେ ଭଗବାନଙ୍କୁ ସ୍ମରଣ କଲେ ଦୁଇଗୁଣ ଲାଭ ମିଳେ—ପାପ ଦୂର ହୁଏ ଓ ଆତ୍ମବିଶ୍ୱାସ ବୃଦ୍ଧି ପାଏ। ବିପତ୍ତିବେଳେ ଆତ୍ମହତ୍ୟା କରିବାର ଭାବନା ମନକୁ ଆଣିବା ଆଦୌ ଉଚିତ ନୁହେଁ। ଆତ୍ମହତ୍ୟା ମହାପାପ। ଏଥିରେ ନରହତ୍ୟାର ପାପ ଲାଗେ। ମଣିଷ ଭାବେ ଯେ ସେ ମରିଗଲେ ତା' ଦୁଃଖ ସରିଯିବ, କିନ୍ତୁ ଏହା ମୂର୍ଖତା। କାରଣ ପୂର୍ବର ପାପ କଟି ନାହିଁ, ପୁଣି ଏକ ନୂଆ ପାପ କରି ସେ ଅଧିକ ଦୁଃଖ ପାଇବ। ଆତ୍ମହତ୍ୟା କଲାବେଳେ ଯେଉଁ ଅସହ୍ୟ କଷ୍ଟ ହୁଏ, ତାହା ଆତ୍ମହତ୍ୟା କରିବାର ଉଦ୍ୟମ କରି ବଞ୍ଚି ଯାଇଥିବା ଲୋକମାନେ ପଶ୍ଚାତ୍ତାପ କରି ବର୍ଣ୍ଣନା କରନ୍ତି। ଆତ୍ମହତ୍ୟା କରୁଥିବା ଲୋକେ ଭୂତପ୍ରେତ ହୁଅନ୍ତି ଏବଂ କ୍ଷୁଧା ପିପାସାରେ ରହି ଦୁଃଖ ପାଆନ୍ତି।

**ପ୍ରଶ୍ନ**—ପତି ପତ୍ନୀକୁ ପରିତ୍ୟାଗ କଲେ ପତ୍ନୀ କ'ଣ କରିବ?

**ଉତ୍ତର**—ସେ ନିଜ ପିତୃଗୃହରେ ରହିବ। ତାହା ସମ୍ଭବ ନ ହେଲେ ଶାଶୁଘର ପାଖରେ ଅଥବା ବାପଘର ନିକଟରେ ଭଡ଼ାଘର ନେଇ ସଂଯମ ଓ ବ୍ରହ୍ମଚର୍ଯ୍ୟ ପାଳନପୂର୍ବକ ରହି ଭଗବାନଙ୍କ ଭଜନସ୍ମରଣ କରିବ। ବାପଘରୁ ଓ ଶାଶୁଘରୁ ଯାହା କିଛି ମିଳିଛି, ସେଥିରେ ଚଳିବ। ତାହା ନ ଥିଲେ ନିଜେ ସିଲେଇ ବା

ବୁଣାବୁଣି କାମ କରି ଜୀବିକା ନିର୍ବାହ କରିବ। ଏହି କଷ୍ଟକୁ ସେ ତପ ବୋଲି ଭାବିବ। ତପ ଦ୍ୱାରା ଆଧ୍ୟାତ୍ମିକ ଶକ୍ତି ବୃଦ୍ଧି ପାଏ।

ମାତା, ପିତା, ଭାଇ, ଭାଉଜ ପ୍ରଭୃତି ସବୁବେଳେ କନ୍ୟା ବା ଭଉଣୀକୁ ଧର୍ମର ମୂର୍ତ୍ତି ବୋଲି ଭାବନ୍ତୁ। ସେମାନଙ୍କୁ ସାହାଯ୍ୟ କଲେ ବହୁତ ପୁଣ୍ୟ ହୁଏ। ବିପତ୍ତି କାଳରେ ସେମାନଙ୍କୁ ଶହେଗୁଣ ସ୍ନେହ କରିବା ଉଚିତ— ***'ବିପତି କାଲ କର ସତଗୁନ ନେହା'*** (ମାନସ, କିଷ୍କିନ୍ଧା. ୭।୩)। ନାରୀ କୌଣସି ଠାରୁ ଆଶ୍ରୟ ନ ପାଇଲେ ମନରେ ଏପରି ଦୃଢ଼ ଧାରଣା କରିବ ଯେ 'ଜଙ୍ଗଲର ପ୍ରାଣୀମାନଙ୍କୁ ଯେଉଁ ଭଗବାନ ପାଳିପୋଷି ରଖିଛନ୍ତି, ସେ କ'ଣ ମୋ ପାଇଁ ବ୍ୟବସ୍ଥା କରିବେ ନାହିଁ। ଜଗତର ନାଥ ଥାଉଁ ଥାଉଁ ମୁଁ କଣ ଅନାଥ ହୋଇ ପାରିବି!' ସେ ନିର୍ଭୟ, ନିଃଶୋକ ଓ ନିଶ୍ଚିନ୍ତ ହୋଇ ଭଗବାନଙ୍କ ଭଜନ ସ୍ମରଣ କରିବା ଉଚିତ। ଜଣେ ବିଧବା ଭଉଣୀ ଅତି ଅସହାୟ ହୋଇ ସୁଦ୍ଧା କହୁଥିଲେ—ଦୁଇଟି ହାତ ଥାଉଁ ଥାଉଁ ପେଟ ମାତ୍ର ଗୋଟିଏ। ପରିଶ୍ରମ କରିବି; ଚିନ୍ତା କ'ଣ?

ବାଲ୍ୟକାଳରୁ ସିଲେଇ, ବୁଣାବୁଣି, ପାଠ ପଢ଼ାଇବା ପ୍ରଭୃତି ଶିଖିବା ଉଚିତ। ଆବଶ୍ୟକ ବେଳେ ଏହା କର୍ମରେ ଆସିବ। ବିବାହ ପରେ ସ୍ୱାମୀଙ୍କ ସେବାରେ ଊଣା କରିବା କଥା ନୁହେଁ, କିନ୍ତୁ ଆଶ୍ରୟ କେବଳ ଭଗବାନଙ୍କୁ କରିବା ଉଚିତ। ଭଗବାନ ହିଁ ପ୍ରକୃତ ଆଶ୍ରୟ। ଏଭଳି ଆଶ୍ରୟ ପତି ନୁହେଁ, ପୁତ୍ର ନୁହେଁ କି ଶରୀର ନୁହେଁ। ପତି ପରିତ୍ୟାଗ କଲେ ବ୍ୟସ୍ତ ନ ହୋଇ ନିଜର କୌଣସି ତ୍ରୁଟି ଥିଲେ ତାକୁ ସଂଶୋଧନ କରିବା ଉଚିତ। ତ୍ରୁଟି ନ ଥିଲେ ନିର୍ଭୀକ ରହିବ। ଭାବନା ଓ ଆଚରଣ ଦୋଷଯୁକ୍ତ ହୋଇଥିଲେ ହୃଦୟରେ ଦୁର୍ବଳତା ଆସେ। ତେଣୁ ସ୍ୱାମୀ ତ୍ୟାଗ କଲେ ସୁଦ୍ଧା ସ୍ତ୍ରୀ ପବିତ୍ର ମନରେ ଭଗବାନଙ୍କ ଭଜନସ୍ମରଣ କରି ରହିବ।

ପୁରୁଷ ପକ୍ଷେ ସ୍ତ୍ରୀକୁ ପରିତ୍ୟାଗ କରିବା ଉଚିତ ନୁହେଁ। ଏହା ଭୟଙ୍କର ପାପ ଓ ଅନ୍ୟାୟ। ଏପରି କଲେ ବ୍ୟକ୍ତି ନରକରେ ପଡ଼େ।

**ପ୍ରଶ୍ନ**—ପୁରୁଷ ଦ୍ୱିତୀୟ ବିବାହ କରିପାରିବ କି?

**ଉତ୍ତର**—ପ୍ରଥମ ସ୍ତ୍ରୀର ସନ୍ତାନ ନ ଥିଲେ ପିତୃଋଣରୁ ମୁକ୍ତ ହେବା ପାଇଁ ପୁରୁଷ ଶାସ୍ତ୍ରର ଆଦେଶ କ୍ରମେ ଦ୍ୱିତୀୟ ବିବାହ କରିପାରେ। ନିଜର ସୁଖଭୋଗ ପାଇଁ ଏହା କରିବା ଉଚିତ ନୁହେଁ। ପୁନର୍ବିବାହ ପାଇଁ ପୂର୍ବ ପତ୍ନୀଙ୍କ ସମ୍ମତି ନେବା ଆବଶ୍ୟକ। ପତ୍ନୀ ପକ୍ଷେ ଏପରି ସମ୍ମତି ଦେଇଦେବା ଉଚିତ। ସ୍ୱାମୀ ପୂର୍ବ ସ୍ତ୍ରୀକୁ ତିରସ୍କାର, ନିରାଦର ନ କରି ତାକୁ ଅଧିକାର, ସମ୍ମାନ ଓ ସୁରକ୍ଷା ଦେବା ଉଚିତ।

ସନ୍ତାନ ହୋଇ ସ୍ତ୍ରୀ ମରିଗଲେ ପୁରୁଷ ପୁନର୍ବିବାହ କରିବା ନିହାତି ଆବଶ୍ୟକ

ନୁହେଁ। କାରଣ ସେ ପିତୃଋଣରୁ ମୁକ୍ତ ହୋଇ ସାରିଛି। ଯାହାର ଭୋଗାସକ୍ତି ମେଣ୍ଟି ନାହିଁ, ସେ ପୁନର୍ବିବାହ କରିପାରେ। ନଚେତ୍ ସେ ବ୍ୟଭିଚାର ଓ ବେଶ୍ୟାଗମନରେ ପ୍ରବୃତ୍ତ ହୋଇ ଭୟଙ୍କର ପାପୀ ହୋଇଯିବ।

**ପ୍ରଶ୍ନ**—ପୂର୍ବକାଳରେ ରାଜାମାନେ ବହୁବିବାହ କରୁଥିଲେ। ଏହା ଉଚିତ କି?

**ଉତ୍ତର**—ସୁଖଭୋଗ ପାଇଁ ବହୁବିବାହ କରିବା ଆଦର୍ଶ ନୁହେଁ। ରାଜା ହେବାମାତ୍ରେ କେହି ଆଦର୍ଶ ହୋଇଯାଆନ୍ତି ନାହିଁ। ଯେଉଁ ରାଜାମାନେ ଶାସ୍ତ୍ରାଜ୍ଞା ମାନି କର୍ତ୍ତବ୍ୟ ପାଳନ କରୁଥିଲେ, ସେମାନେ ପ୍ରକୃତରେ ଆଦର୍ଶ ଅଟନ୍ତି।

ପ୍ରଭୁପ୍ରାପ୍ତି ମନୁଷ୍ୟର ମୁଖ୍ୟ ଲକ୍ଷ୍ୟ। ସେଇଥିପାଇଁ ଏ ମନୁଷ୍ୟଦେହ ମିଳିଛି, ବିବାହ ନିମନ୍ତେ ନୁହେଁ। ଭୂତ-ପ୍ରେତ, ପଶୁ-ପକ୍ଷୀ ଜନ୍ମରେ ମଧ୍ୟ ସ୍ତ୍ରୀପୁରୁଷର ମିଳନ ହୁଏ। ଏହା କିଛି ବଡ଼ କଥା ନୁହେଁ। ପ୍ରଭୁପ୍ରାପ୍ତିର ଅବସର, ଅଧିକାର ଓ ଯୋଗ୍ୟତା ମନୁଷ୍ୟଜନ୍ମରେ ହିଁ ମିଳେ। ମନୁଷ୍ୟ ପ୍ରଭୁପ୍ରାପ୍ତି କରିବାରେ ଜନ୍ମଜାତ ଅଧିକାରୀ। ଯେଉଁମାନେ ବିଚାର ଦ୍ୱାରା ଭୋଗାସକ୍ତି ଛାଡ଼ି ପାରନ୍ତି ନାହିଁ, ସେହି ଦୁର୍ବଳମାନଙ୍କ ପାଇଁ ବିବାହର ବିଧାନ କରାଯାଇଛି। ଭୋଗର ତୁଚ୍ଛତା ବୁଝିବା ପାଇଁ ଓ ସେଥିପ୍ରତି ଅରୁଚି ଜାତ କରିବା ପାଇଁ ଗୃହସ୍ଥାଶ୍ରମକୁ ଆସିବାକୁ ହୁଏ। ଯେଉଁମାନେ ବିଷୟାସକ୍ତି ଛାଡ଼ି ପାରନ୍ତି ନାହିଁ, ସେମାନଙ୍କ ଉପରେ ହିଁ ପିତୃଋଣ ରହେ ଅର୍ଥାତ୍ ଉପକୁର୍ବାଣ ବ୍ରହ୍ମଚାରୀ ଉପରେ ବଂଶ ପରମ୍ପରା ଚଳାଇବାର ଦାୟିତ୍ୱ ଥାଏ। ନୈଷ୍ଠିକ ବ୍ରହ୍ମଚାରୀ ଓ ଭଗବାନଙ୍କ ଭକ୍ତ ଉପରେ ଏ ଦାୟିତ୍ୱ ନ ଥାଏ। ଯେଉଁମାନଙ୍କର ଭୋଗାସକ୍ତି ନାହିଁ, ସେମାନେ କର୍ମଯୋଗୀ, ଜ୍ଞାନଯୋଗୀ, ଭକ୍ତିଯୋଗୀ ଯାହା ବି ହୋଇଥାନ୍ତୁ, ସେମାନଙ୍କ ଉପରେ ଋଣ ରହେ ନାହିଁ। ଯାହାର ଆୟ ନାହିଁ, ତାକୁ ଆୟକର ଦେବାକୁ ପଡ଼ିବ କାହିଁକି?

**ପ୍ରଶ୍ନ**—ସ୍ତ୍ରୀ ପୁନର୍ବିବାହ କରିପାରିବ କି?

**ଉତ୍ତର**—ଥରେ ମାତାପିତା କନ୍ୟାଦାନ କରିସାରିବା ପରେ ସେ ଆଉ କନ୍ୟା ହୋଇ ରହେ ନାହିଁ। ତାହାର ପୁନର୍ବିବାହ ପଶୁଧର୍ମ ଅଟେ।

**ସକୃଦଂଶୋ ନିପତତି ସକୃତ୍‌କନ୍ୟା ପ୍ରଦୀୟତେ।**
**ସକୃଦାହ ଦଦାନୀତି ତ୍ରୀଣ୍ୟେତାନି ସତାଂ ସକୃତ୍॥**

(ମନୁସ୍ମୃତି ୯।୪୭; ମହାଭାରତ ବନ. ୨୯୪।୨୬)

"କୁଟୁମ୍ବର ଧନ ଥରେ ବଣ୍ଟାଯାଏ, କନ୍ୟାଦାନ ଥରେ କରାଯାଏ, 'ମୁଁ ଦେବି' ଏହି ବାଗ୍‌ଦାନ ଥରେ ମାତ୍ର କରାଯାଏ। ସତ୍‌ପୁରୁଷଙ୍କ ଦ୍ୱାରା ଏଇ ତିନିକାର୍ଯ୍ୟ ଥରେ ମାତ୍ର ହୁଏ।"

ଶାସ୍ତ୍ରୀୟ, ଧାର୍ମିକ, ଶାରୀରିକ ଓ ବ୍ୟବହାରିକ—ଏଇ ଚ୍ୟରି ଦୃଷ୍ଟିରୁ ଦେଖିଲେ ସ୍ତ୍ରୀର ପୁନର୍ବିବାହ ଅନୁଚିତ। ଏଥିନିମନ୍ତେ ଶାସ୍ତ୍ରରେ ବିଧାନ ନାହିଁ। ଧର୍ମ ଦୃଷ୍ଟିରୁ ସ୍ତ୍ରୀ ଉପରେ ପିତୃଋଣ ନାହିଁ। ଶାରୀରିକ ଦୃଷ୍ଟିରୁ ସ୍ତ୍ରୀଠାରେ କାମଶକ୍ତିକୁ ରୋକିବାର ସାମର୍ଥ୍ୟ ବା ମନୋବଳ ଥାଏ। ବ୍ୟବହାରିକ ଦୃଷ୍ଟିରୁ ସ୍ତ୍ରୀ ପୁନର୍ବିବାହ କଲେ ତାହାର ପୂର୍ବ ସନ୍ତାନମାନେ କେଉଁଆଡ଼େ ଯିବେ? କିଏ ସେମାନଙ୍କର ପାଳନପୋଷଣ କରିବ? ଦ୍ୱିତୀୟ ସ୍ୱାମୀ ସେମାନଙ୍କୁ ଗ୍ରହଣ କରିବ ନାହିଁ। ତେଣୁ ସ୍ତ୍ରୀ ପୁନର୍ବିବାହ ନ କରି ସଂଯମପୂର୍ବକ ରହିବା ଉଚିତ। ଶାସ୍ତ୍ରରେ କୁହାଯାଇଛି ଯେ ପାଞ୍ଚ-ସାତଟି ସନ୍ତାନ ଜନ୍ମ କରିଥିବା ସ୍ତ୍ରୀ ଯଦି ସ୍ୱାମୀର ମୃତ୍ୟୁ ପରେ ବ୍ରହ୍ମଚର୍ଯ୍ୟ ପାଳନ କରେ, ତାକୁ ନୈଷ୍ଠିକ ବ୍ରହ୍ମଚ୍ୟରୀର ଗତି ମିଳିବ; ପୁଣି ଯେଉଁମାନଙ୍କର ଆଦୌ ସନ୍ତାନ ନାହିଁ, ସେମାନଙ୍କ ସଦ୍‌ଗତିରେ ସନ୍ଦେହ କ'ଣ?

**ପ୍ରଶ୍ନ**—ଯୁବତୀ ସ୍ତ୍ରୀ ବିଧବା ହେଲେ ସେ କ'ଣ କରିବ?

**ଉତ୍ତର**—ସ୍ୱାମୀ ଜୀବିତାବସ୍ଥାରେ ଯେଉଁ ସବୁ କଥା ଭଲ ପାଉଥିଲେ, ତାଙ୍କ ମୃତ୍ୟୁ ପରେ ବିଧବା ସ୍ତ୍ରୀ ସେହି ଅନୁସାରେ ଆଚରଣ କରିବ। ସେ ବିଚ୍ୟରିବ ଯେ ଭଗବାନ ଯେଉଁ ବିପତ୍ତି ଦେଇଛନ୍ତି, ତାହା ତା'ର ତପସିଦ୍ଧି ନିମନ୍ତେ ଉଦ୍ଦିଷ୍ଟ। ଜାଣି ଜାଣି କରାଯାଉଥିବା ତପସ୍ୟା ଠାରୁ ଏହା ଉଚ୍ଚ ଧରଣର ତପସ୍ୟା। ଭଗବାନଙ୍କ ବିଧାନରେ କରାଯାଉଥିବା ତପ ଓ ସଂଯମର ମହିମା ବହୁତ ଅଧିକ। ବିଧବା ସ୍ତ୍ରୀ ଏହା ବିଚ୍ୟର କରି ସର୍ବଦା ଉତ୍ସାହିତ ରହିବା ଉଚିତ ଯେ ତପ କରିବା ପାଇଁ ପ୍ରଭୁ ତାଙ୍କୁ ଉତ୍ତମ ଅବସର ଦେଇଛନ୍ତି। ଭାଗବତରେ କୁହାଯାଇଛି—

**ତତ୍ତେଽନୁକମ୍ପାଂ ସୁସମୀକ୍ଷମାଣୋ ଭୁଞ୍ଜାନ ଏବାତ୍ମକୃତଂ ବିପାକମ୍।**
**ହୃଦ୍‌ବାଗ୍‌ବପୁର୍ଭିର୍ବିଦଧନ୍ନମସ୍ତେ ଜୀବେତ ଯୋ ମୁକ୍ତିପଦେ ସ ଦାୟଭାକ୍॥**

(ଶ୍ରୀମଦ୍‌ଭାଗବତ ୧୦।୧୪।୮)

ଅର୍ଥାତ୍—ଯେଉଁ ମନୁଷ୍ୟ ପ୍ରତିକ୍ଷଣ ଉତ୍ସୁକ ହୋଇ ଉତ୍ତମ ପ୍ରକାରେ ଆପଣଙ୍କ କୃପା ଅନୁଭବ କରେ, ଯେ ପ୍ରାରବ୍ଧ ଅନୁସାରେ ଦୁଃଖ-ସୁଖ ଯାହା ମିଳେ ତାକୁ ନିର୍ବିକାର ମନରେ ଭୋଗ କରେ ଏବଂ ଯେ ପ୍ରେମପୂର୍ଣ୍ଣ ହୃଦୟ, ଗଦ୍‌ଗଦ ବାଣୀ ଓ ପୁଲକିତ ଶରୀର ଦ୍ୱାରା ନିଜକୁ ଆପଣଙ୍କ ଚରଣରେ ସମର୍ପିତ କରେ—ଏହି ପ୍ରକାର ଜୀବନ ଅତିବାହିତ କରୁଥିବା ମନୁଷ୍ୟ, ପୁତ୍ର ନିଜ ପିତାଙ୍କ ସମ୍ପତ୍ତିର ଉତ୍ତରାଧିକାରୀ ହେବା ପରି ଅନାୟାସରେ ଆପଣଙ୍କ ପରମପଦର ଅଧିକାରୀ ହୁଏ।

ବିଧବା ସ୍ତ୍ରୀ ନିଜ ଚରିତ୍ର ରକ୍ଷା ପାଇଁ ବିଶେଷ ଧ୍ୟାନ ଦେବା ଉଚିତ। ସେ

ବ୍ୟଭିଚାର କଲେ ପିତୃକୁଳ ଓ ପତିକୁଳ ଉଭୟକୁ କଳଙ୍କିତ କରେ, ମର୍ଯ୍ୟାଦା ନାଶ କରେ ଓ ମୃତ୍ୟୁପରେ ନିଜେ ଘୋର ନରକରେ ପଡ଼େ। ତେଣୁ ନିଜ ମର୍ଯ୍ୟାଦା ମଧ୍ୟରେ ରହିବା ଉଚିତ ଓ କଦାପି ଧର୍ମବିରୁଦ୍ଧ କର୍ମ କରିବା ଉଚିତ ନୁହେଁ। ମାତା କୁନ୍ତୀଙ୍କ ପରି ବୈଧବ୍ୟଧର୍ମ ପାଳନ କରିବା ଆବଶ୍ୟକ। ମାତା କୁନ୍ତୀଙ୍କୁ ସ୍ମରଣ କରିବା ଦ୍ୱାରା ଧର୍ମ ପାଳନ ପାଇଁ ଉତ୍ସାହ ମିଳେ।

**ପ୍ରଶ୍ନ**—ଆଜିକାଲି ସ୍ତ୍ରୀକୁ ପୁରୁଷଙ୍କ ସହ ସମାନ ଅଧିକାର ଦେବା ନିମନ୍ତେ କୁହାଯାଉଛି, ଏହା ଠିକ୍ କି?

**ଉତ୍ତର**—ଏହା ଠିକ୍ ନୁହେଁ। ପ୍ରକୃତ ପକ୍ଷରେ ସ୍ତ୍ରୀର ଅଧିକାର ପୁରୁଷ ସଙ୍ଗେ ସମାନ ନୁହେଁ, ବରଂ ତାହାର ବିଶେଷ ଅଧିକାର ଅଛି। ପିତୃଗୃହ ତ୍ୟାଗ କରି ସେ ପତିଗୃହକୁ ଆସିଥିବାରୁ ଏହି ଗୃହରେ ତାହାର ଅଧିକାର ତାତ୍ପର୍ଯ୍ୟପୂର୍ଣ୍ଣ। ବାହ୍ୟ-ଜଗତରେ ସ୍ୱାମୀର ଅଧିକାର ମହତ୍ତ୍ୱପୂର୍ଣ୍ଣ ହୋଇଥିବା ବେଳେ ଗୃହ ମଧ୍ୟରେ ସେ ସ୍ୱାମିନୀ ଓ ବୋହୂରାଣୀ। ରଥର ଦୁଇ ଚକ ପୃଥକ୍ ପୃଥକ୍ ଥାଆନ୍ତି। ଦୁଇ ଚକ ଏକାଠି ଲାଗି ରହିଲେ ରଥ ଚାଲେ ନାହିଁ। ସେହିପରି ପତିପତ୍ନୀଙ୍କ ଅଧିକାର ପୃଥକ୍ ହେଲେ ଗୃହସ୍ଥ ଆଶ୍ରମ ସୁନ୍ଦରଭାବେ ପରିଚାଳିତ ହେବ। ଉଭୟଙ୍କର ଅଧିକାର ସମାନ ହେଲେ ସ୍ତ୍ରୀ ପରି ପୁରୁଷ କିପରି ଗର୍ଭଧାରଣ କରିବ? ଅତଏବ ସ୍ତ୍ରୀ ଓ ପୁରୁଷଙ୍କର ନିଜ ନିଜ କ୍ଷେତ୍ରରେ ଯଥୋଚିତ ଅଧିକାର ହିଁ ସମାନ ଅଧିକାର।

ନିଜକୁ ଯେଉଁ ଅଧିକାର ମିଳିଛି, ତାହା ଶ୍ରେଷ୍ଠ ଓ ଉତ୍ତମ। ପୁରୁଷକୁ ଅଧିକ ଅଧିକାର ମିଳିଛି, ମୋତେ କମ୍ ମିଳିଛି—ସ୍ତ୍ରୀ ଏପରି ବିଚାର କରିବା ଉଚିତ ନୁହେଁ। ଅଜ୍ଞତା କାରଣରୁ ଏଭଳି ସମାନ ଅଧିକାର ପାଇଁ ଅଭିଯୋଗ କରାଯାଉଛି। କମ୍ ଅଧିକାର ବରଂ ଭଲ। କର୍ତ୍ତବ୍ୟ ଅଧିକ ହେବା ଉଚିତ। ଅଧିକାର କର୍ତ୍ତବ୍ୟର ଦାସ, କର୍ତ୍ତବ୍ୟ ଅଧିକାରର ଦାସ ନୁହେଁ। ନିଜ କର୍ତ୍ତବ୍ୟକୁ ତତ୍ପରତାର ସହିତ ପାଳନ କଲେ ସଂସାର, ସନ୍ଥମହାତ୍ମା, ଶାସ୍ତ୍ର ଓ ଭଗବାନ ଅଧିକାର ପ୍ରଦାନ କରନ୍ତି।

ଅଧିକାର ପାଇବାର ଇଚ୍ଛା ଜନ୍ମମରଣର କାରଣ ଅଟେ। ତାହା ଇଚ୍ଛୁକକୁ ନରକକୁ ନେଇଯାଏ। ଆମେ ଦେଖିଛୁ, ଗୋଟିଏ ସାହିର କୁକୁର ଅନ୍ୟ ସାହିକୁ ଗଲେ ସେଠାକାର କୁକୁର ତାକୁ କାମୁଡ଼ିବାକୁ ଗୋଡ଼ାଏ। ଦୁଇ କୁକୁର ପରସ୍ପର ମଧ୍ୟରେ ଲଢ଼ନ୍ତି। ଆଗନ୍ତୁକ କୁକୁର ତଳେ ପଡ଼ିଯାଇ ଗୋଡ଼ ଉପରକୁ କରିଦେଇ ପରାଜୟ ସ୍ୱୀକାର କରିବାର ସୂଚନା ଦେଲେ ଅନ୍ୟ କୁକୁର ତା'ଉପରେ ଠିଆ ହୋଇଯାଏ ଓ କଳହ ବନ୍ଦ କରିଦିଏ। ପ୍ରତ୍ୟେକ କୁକୁର ନିଜ ଗଳିରେ ଅଧିକାର ସାବ୍ୟସ୍ତ କରେ। ଅନ୍ୟ ଗଳିର କୁକୁର ସେଠାକୁ ଆସି ଏହା ମାନିଗଲେ କଳହ

ହୁଏ ନାହିଁ। ଏଥିରୁ ଜଣାଗଲା ଯେ ଅଧିକାର ପାଇବା ଲାଳସା କୁକୁରମାନଙ୍କ ଠାରେ ମଧ୍ୟ ଅଛି। ଯଦି ମନୁଷ୍ୟଠାରେ ବି ଏହି ଲାଳସା ରହେ, ତେବେ ତା'ର ମନୁଷ୍ୟତା ରହିଲା କେଉଁଠି? ନୀଚ ମନୁଷ୍ୟମାନଙ୍କ ଠାରେ ଅଧିକାରର ଲାଳସା ଥାଏ। ଯେଉଁମାନେ ଶ୍ରେଷ୍ଠ, ସେମାନେ ଉତ୍ସାହପୂର୍ବକ ନିଜର କର୍ତ୍ତବ୍ୟ ସମ୍ପାଦନ କରନ୍ତି। କର୍ତ୍ତବ୍ୟ ପାଳନ କରୁଥିବାରୁ ସେମାନଙ୍କ ଅଧିକାରର ମହିମା ଆପେ ଆପେ ବୃଦ୍ଧି ପାଏ।

ବାସ୍ତବରେ ଦେଖିବାକୁ ଗଲେ ସ୍ତ୍ରୀମାନଙ୍କର ଅଧିକାର କମ୍ ନୁହେଁ। ସେମାନଙ୍କୁ ଗୃହର ସ୍ୱାମିନୀ ଓ ଲକ୍ଷ୍ମୀ କୁହାଯାଏ। ବାହାରେ ଯାଇ କର୍ମ କରୁଥିବା ପୁରୁଷମାନେ ଘରକୁ ଫେରି ସ୍ତ୍ରୀମାନଙ୍କ ସାହାଯ୍ୟ ଓ ଆଶ୍ରୟ ଲୋଡ଼ନ୍ତି। ସ୍ତ୍ରୀମାନେ ଘରର ସମସ୍ତ ପ୍ରାଣୀଙ୍କର ଆଶ୍ରୟଦାତ୍ରୀ। ସେମାନେ ସମସ୍ତଙ୍କର ସେବା ଓ ପାଳନ କରନ୍ତି। ତେଣୁ ସେମାନଙ୍କର ଅଧିକାର ଅଧିକ। ପରନ୍ତୁ ସେମାନେ ଯେତେବେଳେ ନିଜର କର୍ତ୍ତବ୍ୟରୁ ଚ୍ୟୁତ ହୁଅନ୍ତି, ସେତେବେଳେ ସେମାନଙ୍କ ମନରେ ଅଧିକ ଅଧିକାର ପାଇବାର ଲାଳସା ଜାତ ହୁଏ।

**ପ୍ରଶ୍ନ**—ଆଜିକାଲି ମହଙ୍ଗା ଯୁଗରେ ନାରୀମାନେ ଚାକିରି କଲେ କ୍ଷତି କ'ଣ?

**ଉତ୍ତର**—ନାରୀର ହୃଦୟ କୋମଳ। ତେଣୁ ସେ ଚାକିରିରେ କଷ୍ଟ, ଭର୍ତ୍ସନା ଓ ତିରସ୍କାର ସହ୍ୟ କରିପାରେ ନାହିଁ। ଅଳ୍ପ ବିପଦରେ ତା' ଆଖିରୁ ଲୁହ ଝରିଆସେ। ଚାକିରି ପ୍ରକୃତରେ ପରାଧୀନତା, ଦାସତା ଓ ତୁଚ୍ଛତା ଅଟେ। ପୁରୁଷ ଏହା କରିପାରେ ଓ ସବୁ ସହିପାରେ। ଚାକିରି, କୃଷି, ବାଣିଜ୍ୟ-ବ୍ୟବସାୟ ଆଦି କରିବା ପୁରୁଷର ଦାୟିତ୍ୱ। ଗୃହକର୍ମ ସ୍ତ୍ରୀର ଦାୟିତ୍ୱ। ତେଣୁ ଗୃହକର୍ମ ସମ୍ପାଦନରେ ସ୍ତ୍ରୀର ପ୍ରତିଷ୍ଠା ଓ ଆଦର ରହିଛି। ବାହାର କାର୍ଯ୍ୟ କରିବା ସ୍ତ୍ରୀ ପାଇଁ ତିରସ୍କାର। ସ୍ତ୍ରୀ ସମ୍ମାନର ସହିତ ଉପାର୍ଜନ କଲେ କିଛି କ୍ଷତି ନାହିଁ ଅର୍ଥାତ୍ ସେ ନିଜ ଘରେ ରହି ସ୍ୱେଟର ବୁଣିବା, ପୋଷାକ ସିଲାଇ କରିବା, ଚିତ୍ର ଆଙ୍କିବା ଆଦି କାର୍ଯ୍ୟ କରି ଜୀବିକା ଅର୍ଜନ କରିପାରେ। ଏପରି କର୍ମ କଲେ ସେ କାହାର ଅଧୀନ ହୁଏ ନାହିଁ।



## (୬) ମହାପାପରୁ ଦୂରେଇ ରୁହ

ବ୍ରହ୍ମହତ୍ୟା ସୁରାପାନଂ ସ୍ତେୟଂ ଗୁର୍ବଙ୍ଗନାଗମଃ।
ମହାନ୍ତି ପାତକାନ୍ୟାହୁଃ ସଂସର୍ଗଶ୍ଚାପି ତୈଃ ସହ॥

(ମନୁସ୍ମୃତି ୧୧।୫୪)

—"ବ୍ରାହ୍ମଣହତ୍ୟା, ମଦ୍ୟପାନ, ସ୍ୱର୍ଣ୍ଣ ଆଦି ପଦାର୍ଥ ଚୋରି କରିବା ଓ ଗୁରୁପତ୍ନୀଙ୍କ ସହିତ ବ୍ୟଭିଚାର କରିବା"—ଏ ଚାରୋଟି ମନ୍ଦକୃତ୍ୟ ମହାପାପ ରୂପରେ ପରିଗଣିତ ହୁଏ। ଏଥିମଧ୍ୟରୁ ଯେକୌଣସି ମହାପାପ କରୁଥିବା ବ୍ୟକ୍ତି ସଙ୍ଗରେ କେହି ତିନିବର୍ଷ ଅତିବାହିତ କଲେ ତାହାକୁ ମଧ୍ୟ ମହାପାପର ଫଳ ମିଳେ*।

## (କ) ବ୍ରହ୍ମହତ୍ୟା

"**ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁଃ**"—ବ୍ରାହ୍ମଣ ହେଉଛି ଚାରିବର୍ଣ୍ଣର ଗୁରୁ। ବ୍ରାହ୍ମଣମାନେ ଯେତିକି ଶାସ୍ତ୍ରଜ୍ଞାନର ଆଲୋକ ପ୍ରଦାନ କରିଛନ୍ତି, ତାହା ଅନ୍ୟ କୌଣସି ଜାତି ଦ୍ୱାରା ହୋଇ ନାହିଁ। ତେଣୁ ବ୍ରାହ୍ମଣହତ୍ୟା ମହାପାପ ଅଟେ। ଏହିପରି ସଂସାରର ହିତ ସାଧନ କରୁଥିବା ମହାପୁରୁଷ, ଭଗବଦ୍‌ଭକ୍ତ ତଥା ଗାଈ ପ୍ରଭୃତିଙ୍କୁ ମାରିବା ମହାପାପ। ଯାହାଦ୍ୱାରା ଜନସମୁଦାୟର ଯେତେ ଅଧିକ ଉପକାର ହୁଏ, ତାହାକୁ ହତ୍ୟା କରିବା ସେତେ ଅଧିକ ପାପ।

## (ଖ) ମଦ୍ୟପାନ

ମାଂସ, ଅଣ୍ଡା, ଚରସ, ଭାଙ୍ଗ ଆଦି ଅଶୁଦ୍ଧ ତଥା ମାଦକ ଦ୍ରବ୍ୟ ସେବନ କରିବା ପାପ ଅଟେ। ମାତ୍ର ମଦ୍ୟପାନ ମହାପାପ। ମଦ୍ୟପାନ ଦ୍ୱାରା ମନୁଷ୍ୟର ଧାର୍ମିକ ଭାବନା ଓ ଧର୍ମପ୍ରତି ଥିବା ରୁଚି ନଷ୍ଟ ହୋଇଯାଏ। ଏ ଅଭ୍ୟାସ ମନୁଷ୍ୟକୁ ପତିତ କରିଦିଏ।

ମଦ୍ୟ ତିଆରି ସମୟରେ ଅସଂଖ୍ୟ ଜୀବ ମରିଯାଆନ୍ତି। ଗଙ୍ଗାଜଳ ସମସ୍ତଙ୍କୁ ଶୁଦ୍ଧ କରେ; ପରନ୍ତୁ ମଦ୍ୟପାତ୍ରକୁ ସେଥିରେ ବୁଡ଼ାଇ ରଖିଲେ ସୁଦ୍ଧା ତାହା ଶୁଦ୍ଧ ହୁଏ ନାହିଁ। ଯେବେ ମଦ୍ୟପାତ୍ର ଏତେ ଅଶୁଦ୍ଧ, ତାହାହେଲେ ମଦ୍ୟପ କେତେ ଯେ ଅଧିକ ଅଶୁଦ୍ଧ ହୋଇଥିବ, ତାହାର ଠିକଣା ନାହିଁ। ମୁଁ ଶୁଣିଛି ଯେ ମୁସଲମାନ ଧର୍ମରେ କୁହାଯାଇଛି—ଦେହର କୌଣସି ସ୍ଥାନରେ ମଦ ଲାଗିଗଲେ ସେହି ଅଙ୍ଗର ଚମଡ଼ାକୁ କାଟି ଫୋପାଡ଼ି ଦେବା ଉଚିତ।

**ପ୍ରଶ୍ନ**—ଆଜିକାଲି କେତେ ପ୍ରକାର ବିଦେଶୀ ଔଷଧରେ ମଦ ମିଶ୍ରଣ କରାଯାଉଛି। ସ୍ୱାସ୍ଥ୍ୟ ଲାଭ ପାଇଁ ଏପରି ଔଷଧ ସେବନ କଲେ ମହାପାପ ହୁଏ କି?

**ଉତ୍ତର**—ମଦ ମିଶାଯାଇଥିବା ଯେକୌଣସି ଔଷଧ ସେବନ କଲେ ମହାପାପ ଲାଗେ।

---

* ସ୍ତେନୋ ହିରଣ୍ୟସ୍ୟ ସୁରାଂ ପିବଁଶ୍ଚ ଗୁରୋସ୍ତଳ୍ପମାବସନ୍‌ବ୍ରହ୍ମହା ଚୈତେ ପତନ୍ତି ଚତ୍ୱାରଃ ପଞ୍ଚମଶ୍ଚାଚରଁସ୍ତୈରିତି॥ (ଛାନ୍ଦୋଗ୍ୟ. ୫।୧୦।୯)

**ପ୍ରଶ୍ନ**—ପରିବାରରେ ଜଣେ ବ୍ୟକ୍ତି ମଦ୍ୟପାନ କରୁଥିଲେ ତା'ସଙ୍ଗରେ ରହୁଥିବା ପରିବାରର ଲୋକଙ୍କୁ ମହାପାପ ଲାଗେ କି?

**ଉତ୍ତର**—ନା। କୁଟୁମ୍ବ ଲୋକେ ବାଧ୍ୟ ହୋଇ ସେଇ ମଦ୍ୟପ ସଙ୍ଗରେ ରହନ୍ତି। ମଦ୍ୟପ ପତି ସହିତ ତା'ର ପତ୍ନୀ ବାଧ୍ୟ ହୋଇ ରହେ, ମାତ୍ର ତାକୁ ପାପ ଲାଗେ ନାହିଁ। ନିଜ ଆଗ୍ରହ ସହକାରେ ରହିଲେ ହିଁ କୁସଙ୍ଗର ଦୋଷ ଲାଗେ।

**ପ୍ରଶ୍ନ**—ଯେଉଁ ବ୍ୟକ୍ତି ଅଜ୍ଞାନବଶତଃ ମଦ୍ୟପାନରେ ଅଭ୍ୟସ୍ତ ହୋଇଯାଇଥିଲା, ଏବେ ଜ୍ଞାନୋଦୟ ହେବା ପରେ ସେ ମଦ୍ୟପାନର ମହାପାପରୁ କିପରି ଶୁଦ୍ଧ ହେବ?

**ଉତ୍ତର**—ସେପରି ବ୍ୟକ୍ତି ହୃଦୟର ସହ ପଶ୍ଚାତ୍ତାପ କରି ମଦ୍ୟପାନ ସର୍ବଥା ତ୍ୟାଗ କଲେ ଏବଂ ଭବିଷ୍ୟତରେ କଦାପି ନ ପିଇବାକୁ ପ୍ରତିଜ୍ଞା କଲେ ତାକୁ ପାପରୁ କ୍ଷମା ମିଳେ। ଜୀବ ସ୍ୱତଃ ଶୁଦ୍ଧ ଅଟେ—***'ଚେତନ ଅମଲ ସହଜ ସୁଖରାସୀ'*** ତେଣୁ ସେ ଅଶୁଦ୍ଧିକୁ ଛାଡ଼ିଦେବାମାତ୍ରେ ନିଜର ସ୍ୱାଭାବିକ ପବିତ୍ରତା ଲାଭ କରେ।

## (ଗ) ଚୋରି

ଯେକୌଣସି ପଦାର୍ଥକୁ ଚୋରି କରିବା ପାପ ଅଟେ; ପରନ୍ତୁ ସୁନା, ହୀରା ଆଦି ବହୁମୂଲ୍ୟ ପଦାର୍ଥ ଚୋରି କରିବା ମହାପାପ। ଯେଉଁ ବସ୍ତୁ ଯେତିକି ଅଧିକ ମୂଲ୍ୟବାନ୍, ତାହା ଚୋରି କଲେ ସେତେ ଅଧିକ ପାପ ଲାଗେ।

## (ଘ) ଗୁରୁପତ୍ନୀଗମନ

ବୀର୍ଯ୍ୟନାଶର ଯେତେ ଉପାୟ ଅଛି, ସେ ସମସ୍ତ ପାପ*; ପରନ୍ତୁ ଗୁରୁପତ୍ନୀଗମନ ମହାପାପ ଅଟେ। ଆମର ବିଦ୍ୟାଦାତା ତଥା ଆମ ଜୀବନକୁ ଶୁଦ୍ଧ କରୁଥିବା ପୂଜନୀୟ ଗୁରୁଙ୍କ ପତ୍ନୀ ମାଆଙ୍କ ଠାରୁ ମଧ୍ୟ ଅଧିକ ସମ୍ମାନନୀୟା। ତାଙ୍କ ସହିତ ବ୍ୟଭିଚାର କରିବା ମହାପାପ।

ପରସ୍ତ୍ରୀଗମନ କରିବା ମଧ୍ୟ ମହାପାପ। ତେଣୁ ତାହାକୁ ବ୍ୟଭିଚାର ଅର୍ଥାତ୍ ବିଶେଷ ଅଭିଚାର (ହିଂସା) କୁହାଯାଇଛି। ପୁରୁଷ ପରସ୍ତ୍ରୀଗମନ କଲେ ଅଥବା ସ୍ତ୍ରୀ

---

* ଗୋଟିଏ ବିନ୍ଦୁ ବୀର୍ଯ୍ୟରେ ହଜାର ହଜାର ଜୀବ ଥାଆନ୍ତି। ସ୍ତ୍ରୀ ସଙ୍ଗମରେ ବହୁ ପରିମାଣରେ ବୀର୍ଯ୍ୟ ନଷ୍ଟ ହୁଏ। ସେଥିରେ ଥିବା ଯେଉଁ ଜୀବଟି ଗର୍ଭାଶୟର ରଜ ସହିତ ମିଶେ, ସେ ହିଁ ଗର୍ଭରୂପ ଧାରଣ କରେ। ଅବଶିଷ୍ଟ ଜୀବ ମରିଯାନ୍ତି। ଏହି ଜୀବହିଂସା ଯୋଗୁଁ ପାପ ଲାଗେ। ସନ୍ତାନ ଉତ୍ପତ୍ତି ଉଦ୍ଦେଶ୍ୟରେ ଋତୁକାଳରେ ସ୍ତ୍ରୀସଙ୍ଗ କଲେ ପାପ ଲାଗେ ନାହିଁ (ପାପ ତ ହୁଏ, ପରନ୍ତୁ ଲାଗେ ନାହିଁ)। ଶାସ୍ତ୍ରର ଆଜ୍ଞା ଅଛି—'ସ୍ୱଭାବନିୟତଂ କର୍ମ କୁର୍ବନ୍ନାପ୍ନୋତି କିଲ୍‌ବିଷମ୍ (ଗୀତା ୧୮।୪୭); ଧର୍ମାବିରୁଦ୍ଧୋ ଭୂତେଷୁ କାମୋଽସ୍ମି' (ଗୀତା ୭।୧୧)। କେବଳ ଭୋଗେଚ୍ଛାରେ ସ୍ତ୍ରୀସଙ୍ଗ କଲେ ଜୀବହିଂସାର ପାପ ଲାଗିବ।

ପରପୁରୁଷଗମନ କଲେ ପିତାମାତା ଓ ଶାଶୁଶ୍ୱଶୁର ଏବଂ ଉଭୟ ପରିବାରର ସମସ୍ତ ସଦସ୍ୟ ଦୁଃଖୀ ହୁଅନ୍ତି । ଏହା ପାପ ଅଟେ । ଏପରି କୁକର୍ମ ଦ୍ୱାରା ଶାସ୍ତ୍ର, ଧର୍ମ, ସମାଜ, କୁଳ ପ୍ରଭୃତିର ମର୍ଯ୍ୟାଦା ନଷ୍ଟ କରିବା ମଧ୍ୟ ପାପ । ଏଇ ଉଭୟ କାରଣରୁ ପରସ୍ତ୍ରୀଗମନ ଅଥବା ପରପୁରୁଷଗମନ ମହାପାପ । ଜଣେ ବୁଦ୍ଧିମାନ୍ ଲୋକ ନିଜ ଅନୁଭୂତିରୁ ମୋତେ କହିଥିଲେ ଯେ ପରସ୍ତ୍ରୀଗମନ ଦ୍ୱାରା ହୃଦୟରୁ ଧୀରେ ଧୀରେ ଈଶ୍ୱରବିଶ୍ୱାସ ଲୋପ ପାଇଯାଏ ଓ ବ୍ୟକ୍ତି ନାସ୍ତିକ ହୋଇଯାଏ ।

ହିନ୍ଦୁ, ମୁସଲମାନ ବା ଖ୍ରୀଷ୍ଟିଆନ ଯେ କେହି ହୁଅନ୍ତୁ, ଏ ପ୍ରକାର କାର୍ଯ୍ୟ ତ୍ୟାଗ କରିବା ଉଚିତ । ଆମକୁ ଦୁର୍ଲଭ ମନୁଷ୍ୟଦେହ ମିଳିଛି । ଅନ୍ୟୂନ ପକ୍ଷରେ ଏଭଳି ମହାପାପରୁ ଦୂରରେ ରହିବା ଉଚିତ । ତା' ନ ହେଲେ ଭୂତପ୍ରେତ ଆଦି ଯୋନିକୁ ଯାଇ ଦୁର୍ଗତିର ଯନ୍ତ୍ରଣା ଭୋଗିବାକୁ ହେବ ।

## ମହାପାପର ଦୁଇଗୁଣ ପାପ—ଗର୍ଭପାତ

ବ୍ରହ୍ମହତ୍ୟା ପରି ଗର୍ଭପାତ ମଧ୍ୟ ମହାପାପ । ଶାସ୍ତ୍ରରେ ଗର୍ଭପାତକୁ ବ୍ରହ୍ମହତ୍ୟାଠାରୁ ଦୁଇଗୁଣ ପାପ ବୋଲି କୁହାଯାଇଛି—

**ଯତ୍ପାପଂ ବ୍ରହ୍ମହତ୍ୟାୟା ଦ୍ୱିଗୁଣଂ ଗର୍ଭପାତନେ ।**
**ପ୍ରାୟଶ୍ଚିତ୍ତଂ ନ ତସ୍ୟାସ୍ତି ତସ୍ୟାସ୍ତ୍ୟାଗୋ ବିଧୀୟତେ ॥**

(ପାରାଶରସ୍ମୃତି ୪ । ୨୦)

ଅର୍ଥାତ୍—ଗର୍ଭପାତ ଦ୍ୱାରା ବ୍ରହ୍ମହତ୍ୟାର ଦୁଇଗୁଣ ପାପ ହୁଏ । ଏହି ମହାପାପର କୌଣସି ପ୍ରାୟଶ୍ଚିତ୍ତ ନାହିଁ । ଏପରି ସ୍ଥଳରେ ସ୍ତ୍ରୀକୁ ପରିତ୍ୟାଗ କରିବା ବିଧେୟ ।

ଭଗବାନଙ୍କ ଅପାର କୃପାରୁ ଜୀବକୁ ମନୁଷ୍ୟଦେହ ମିଳେ । ଏପରି ସ୍ଥଳେ ଅପରେସନ, ଗର୍ଭପାତ ଓ ଗର୍ଭନିରୋଧକ ଔଷଧର ବ୍ୟବହାର ପ୍ରଭୃତି ଦ୍ୱାରା ଜୀବକୁ ମନୁଷ୍ୟଦେହ ଧାରଣ କରିବାରେ ବାଧା ଦେବା ଏବଂ ଜାତ ହେବା ପୂର୍ବରୁ ତାକୁ ନଷ୍ଟ କରିବା ମହାପାପ ଅଟେ । ନିରପରାଧ ଜୀବକୁ ଜନ୍ମପୂର୍ବରୁ ହତ୍ୟା କରିବା ବଡ଼ ଅନ୍ୟାୟ । ସେ ମନୁଷ୍ୟଦେହ ଧାରଣ କରି କି କି ଭଲ କାମ କରିଥାନ୍ତା, ସେ କଥା କାହାକୁ ବା କ'ଣ ଜଣା? ସେ ନିଜକୁ ଉଦ୍ଧାର କରି ପାରିଥାଆନ୍ତା ଓ ସମାଜର ମଙ୍ଗଳ ସାଧନ କରି ପାରିଥାଆନ୍ତା । ଜନ୍ମ ହେବା ପୂର୍ବରୁ ହିଁ ତାହାକୁ ହତ୍ୟା କରିଦେବା ମହାପାପ । ନିଜର କଲ୍ୟାଣ ବା ଉଦ୍ଧାର ନ କରିବା ପାପ । ଅନ୍ୟକୁ ଉଦ୍ଧାର ପାଇଁ ସୁଯୋଗ ନ ଦେବା ମହାପାପ । ଏପରି ମହାପାପ କରୁଥିବା ସ୍ତ୍ରୀ-ପୁରୁଷ ପରଜନ୍ମରେ ସନ୍ତାନହୀନ ହୁଅନ୍ତି । ସନ୍ତାନ ନ ପାଇ ଜନ୍ମଜନ୍ମାନ୍ତରେ ସନ୍ତପ୍ତ ରହନ୍ତି ।

ଆମେ ଦେଖୁ, ଯେଉଁ ମାଲିକ ଉତ୍ତମ ଭୃତ୍ୟମାନଙ୍କୁ ତିରସ୍କାର କରେ, ତାକୁ ଉତ୍ତମ ଭୃତ୍ୟ ମିଳନ୍ତି ନାହିଁ। ସେହିପରି ଯେଉଁ ଭୃତ୍ୟ ଉତ୍ତମ ମାଲିକକୁ ତିରସ୍କାର କରେ, ଭବିଷ୍ୟତରେ ତାକୁ ଉତ୍ତମ ମାଲିକ ମିଳନ୍ତି ନାହିଁ। ମହାନ ସନ୍ଥମାନଙ୍କ ସଙ୍ଗଲାଭ କରି ଯେଉଁ ବ୍ୟକ୍ତି ନିଜକୁ ଉଦ୍ଧାର କରେ ନାହିଁ, ତାକୁ ପୁଣି ସେଭଳି ଉତ୍ତମ ସଙ୍ଗ ମିଳେ ନାହିଁ। ମାତାପିତା ପ୍ରସନ୍ନ ହୋଇ ଦେଇଥିବା ମିଠାଇକୁ ଶିଶୁ ଯଦି ନ ଖାଇ ନର୍ଦ୍ଦମାରେ ଫୋପାଡ଼ି ଦିଏ, ତାହାହେଲେ ସେ ମାତାପିତାଙ୍କ ଠାରୁ ଆଉ ମିଠାଇ ପାଏ ନାହିଁ। ସେହିପରି ଭଗବାନଙ୍କ ବିଶେଷ କୃପାରୁ ମିଳିଥିବା ମନୁଷ୍ୟଦେହର ଦୁରୁପଯୋଗ କରି ପାପକର୍ମ କଲେ ସେଭଳି ଦେହ ଆଉ ମିଳେ ନାହିଁ। ଶିଶୁ ଅବୋଧ ହୋଇଥିବାରୁ ମାତାପିତା ତାକୁ ପୁଣି ମିଠାଇ ଦେଇ ପାରନ୍ତି; ପରନ୍ତୁ ଜାଣିଶୁଣି ପାପ କରୁଥିବା ଲୋକକୁ ପୁଣି ମନୁଷ୍ୟଦେହ ମିଳେ ନାହିଁ। ସେହିପରି ଗର୍ଭପାତ କରୁଥିବା ଲୋକର ପରଜନ୍ମରେ ସନ୍ତାନ ହୁଏ ନାହିଁ।

ବ୍ରହ୍ମବୈବର୍ତ୍ତ ପୁରାଣ (ପ୍ରକୃତି ଖଣ୍ଡ, ଦ୍ୱିତୀୟ ଅଧ୍ୟାୟ)ରେ ଲେଖାଅଛି—ସୃଷ୍ଟି ପ୍ରାରମ୍ଭରେ ଭଗବାନ ଶ୍ରୀକୃଷ୍ଣଙ୍କ ଚିନ୍ମୟୀ ଶକ୍ତି ମୂଳ ପ୍ରକୃତି ନିଜ ଗର୍ଭକୁ ଅଗାଧ ଜଳ ମଧ୍ୟକୁ ଫୋପାଡ଼ି ଦେଲେ। ଏହା ଦେଖି ଭଗବାନ ତାଙ୍କୁ ଅଭିଶାପ ଦେଲେ—ଆଜିଠାରୁ ତୁମର କୌଣସି ସନ୍ତାନ ହେବ ନାହିଁ। ଏତିକି ନୁହେଁ, ତୁମର ଅଂଶ ନେଇ ଯେଉଁ ଦିବ୍ୟ ଅଙ୍ଗନାମାନେ ଉତ୍ପନ୍ନ ହେବେ, ସେମାନେ ମଧ୍ୟ ସନ୍ତାନହୀନା ହେବେ*। ଏହାପରେ ମୂଳ ପ୍ରକୃତି ଦେବୀଙ୍କ ଜିହ୍ୱାର ଅଗ୍ରଭାଗରୁ ସରସ୍ୱତୀ ପ୍ରକଟ ହେଲେ। କିଛି ସମୟ ପରେ ନିଜେ ମୂଳ ପ୍ରକୃତି ଦୁଇ ଭାଗ ହୋଇଯାଇ ବାମ ଅଙ୍ଗରୁ 'ଲକ୍ଷ୍ମୀ' ଓ ଡାହାଣ ଅଙ୍ଗରୁ 'ରାଧା' ରୂପ ହୋଇଗଲେ। ସେହି ସମୟରେ ଭଗବାନ ଶ୍ରୀକୃଷ୍ଣ ମଧ୍ୟ ନିଜ ଅଙ୍ଗରୁ ଦୁଇ ରୂପରେ ପ୍ରକଟିତ

---

* ଦୃଷ୍ଟ୍ୱା ଡିମ୍ଭଞ୍ଚ ସା ଦେବୀ ହୃଦୟେନ ବିଭୂଷିତା।
ଉତ୍ସସର୍ଜ ଚ କୋପେନ ବ୍ରହ୍ମାଣ୍ଡଂ ଗୋଲକେ ଜଳେ॥
ଦୃଷ୍ଟ୍ୱା କୃଷ୍ଣଶ୍ଚ ତତ୍ତ୍ୟାଗଂ ହାହାକାରଂ ଚକାର ହ।
ଶଶାପ ଦେବୀଂ ଦେବେଶସ୍ତତ୍‌କ୍ଷଣଂ ଚ ଯଥୋଚିତମ୍॥
ଯତୋଽପତ୍ୟଂ ତ୍ୱୟା ତ୍ୟକ୍ତଂ କୋପଶୀଳେ ସୁନିଷ୍ଠୁରେ।
ଭବତ୍ୱମନପତ୍ୟାପି ଗ୍ୱଦ୍ୟପ୍ରଭୃତିନିଶ୍ଚିତମ୍॥
ଯା ଯାସ୍ତ୍ୱଦଂଶରୂପା ଚ ଭବିଷ୍ୟନ୍ତି ସୁରସ୍ତ୍ରିୟଃ।
ଅନପତ୍ୟାଶ୍ଚ ତାଃ ସର୍ବାସ୍ତତ୍ସମା ନିତ୍ୟଯୌବନାଃ॥
(ପ୍ରକୃତି ୨।୫୦ ରୁ ୫୩)

ହେଲେ । ବାମ ଅଙ୍ଗରୁ 'ଚତୁର୍ଭୁଜ ବିଷ୍ଣୁ' ଓ ଡାହାଣ ଅଙ୍ଗରୁ 'ଦ୍ୱିଭୁଜ କୃଷ୍ଣ'* । ଭଗବାନ ଶ୍ରୀକୃଷ୍ଣ ଲକ୍ଷ୍ମୀ ଓ ସରସ୍ୱତୀଙ୍କୁ ବିଷ୍ଣୁଙ୍କ ସେବାରେ ଉପସ୍ଥିତ ହେବା ପାଇଁ ଆଜ୍ଞା ଦେଲେ । ମୂଳ ପ୍ରକୃତିରୁ ପ୍ରକଟିତ ହୋଇଥିବାରୁ ଲକ୍ଷ୍ମୀ ଓ ସରସ୍ୱତୀ ସନ୍ତାନହୀନା ହେଲେΨ । ଏହାପରେ ଭଗବାନ ଶ୍ରୀକୃଷ୍ଣଙ୍କ ଲୋମ-କୂପରୁ ଅସଂଖ୍ୟ ଗୋପ ଓ ଶ୍ରୀରାଧାଙ୍କ ଲୋମକୂପରୁ ଅସଂଖ୍ୟ ଗୋପକନ୍ୟା ପ୍ରକଟିତ ହେଲେ । ଭଗବାନଙ୍କ ଅଭିଶାପ ଯୋଗୁଁ ଗୋପକନ୍ୟାମାନଙ୍କର ମଧ୍ୟ ସନ୍ତାନ ହେଲେ ନାହିଁ✧ । ଏହି କଥାରୁ ସିଦ୍ଧ ହୁଏ ଯେ ଗର୍ଭପାତ କରୁଥିବା ସ୍ତ୍ରୀ ପରଜନ୍ମମାନଙ୍କରେ ସନ୍ତାନ ଲାଭର ସୁଖ ପାଏ ନାହିଁ ।

**ପ୍ରଶ୍ନ**—ଦେଖାଯାଏ ଯେ ଗର୍ଭପାତ କରିଥିବା ସ୍ତ୍ରୀ ପୁନଃ ଗର୍ଭବତୀ ହୋଇ ସନ୍ତାନ ଲାଭ କରେ । ତେଣୁ ଏହା କିପରି ମାନିବା ଯେ ଗର୍ଭପାତ କରିଥିବା ସ୍ତ୍ରୀର ସନ୍ତାନ ହୁଏ ନାହିଁ?

**ଉତ୍ତର**—ପୂର୍ବର ପ୍ରାରବ୍ଧ ଅନୁସାରେ ଏହି ଜନ୍ମରେ ସନ୍ତାନ ହୋଇପାରେ । ପରନ୍ତୁ ପରଜନ୍ମରେ ନୂତନ ପ୍ରାରବ୍ଧ ଅନୁସାରେ ଆଉ ସନ୍ତାନ ହୁଅନ୍ତି ନାହିଁ । ଇହଜନ୍ମରେ କରିଥିବା ଗର୍ଭପାତରୂପୀ ମହାପାପର ଫଳ ଆଗାମୀ ଜନ୍ମମାନଙ୍କରେ ଭୋଗିବା ସୁନିଶ୍ଚିତ ।

**ପ୍ରଶ୍ନ**—ଗର୍ଭସ୍ରାବ, ଗର୍ଭପାତ ଓ ଭ୍ରୂଣହତ୍ୟା—ଏଗୁଡ଼ିକ ମଧ୍ୟରେ ପ୍ରଭେଦ କ'ଣ?

**ଉତ୍ତର**—ଗର୍ଭ ମଧ୍ୟରେ ଜୀବର ଶରୀର ନିର୍ମାଣ ହେବା ପୂର୍ବରୁ ରଜ-

---

* ଅଥ କାଳାନ୍ତରେ ସା ଚ ଦ୍ୱିଧାରୂପା ବଭୂବ ହ ।
ବାମାର୍ଦ୍ଧାଙ୍ଗା ଚ କମଳା ଦକ୍ଷିଣାର୍ଦ୍ଧା ଚ ରାଧିକା ॥
ଏତସ୍ମିନ୍ନନ୍ତରେ କୃଷ୍ଣୋ ଦ୍ୱିଧାରୂପୋ ବଭୂବ ହ ।
ଦକ୍ଷିଣାର୍ଦ୍ଧଶ୍ଚ ଦ୍ୱିଭୁଜୋ ବାମାର୍ଦ୍ଧଶ୍ଚ ଚତୁର୍ଭୁଜଃ ॥
(ପ୍ରକୃତି ୨ । ୫୬ ଓ ୫୭)

Ψ ଅନପତ୍ୟେ ଚ ତେ ଦ୍ୱେ ଚ ଯତୋ ରାଧାଂଶସମ୍ଭବାଃ । (ପ୍ରକୃତି ୨ । ୬୦)

✧ ରାଧାଙ୍ଗଲୋମକୂପେଭ୍ୟୋ ବଭୂବୁର୍ଗୋପକନ୍ୟକାଃ ।
ରାଧାତୁଲ୍ୟାଶ୍ଚ ସର୍ବାସ୍ତାଃ ରାଧାତୁଲ୍ୟାଃ ପ୍ରିୟଂବଦାଃ ॥
ରତ୍ନଭୂଷଣଭୂଷାଢ୍ୟାଃ ଶଶ୍ୱତ୍ ସୁସ୍ଥିରଯୌବନାଃ ।
ଅନପତ୍ୟାଶ୍ଚ ତାଃ ସର୍ବାଃ ପୁଂସଃ ଶାପେନ ସନ୍ତତମ୍ ॥
(ପ୍ରକୃତି ୨ । ୬୪ ଓ ୬୫)

ବୀର୍ଯ୍ୟର ପତନ ହେବାକୁ ଗର୍ଭସ୍ରାବ କୁହାଯାଏ । ଗର୍ଭରେ ଶରୀର ତିଆରି ହେବା ପରେ ତାକୁ ନଷ୍ଟ କରିବା ଗର୍ଭପାତ ଅଟେ । ଯେତେବେଳେ ଗର୍ଭସ୍ଥିତ ଜୀବର ହାତ, ପାଦ, ମସ୍ତକ ଆଦି ନିର୍ମିତ ହୋଇଯାଏ ଏବଂ ସେ ବାଳକ ବା ବାଳିକା ତାହା ଜଣାପଡ଼ିଯାଏ, ସେତେବେଳେ ତାକୁ ନଷ୍ଟ କରିବା ଭ୍ରୂଣହତ୍ୟା ଅଟେ । ଗର୍ଭସ୍ରାବ ହେଉ, ଗର୍ଭପାତ ହେଉ ଅଥବା ଭ୍ରୂଣହତ୍ୟା ହେଉ—ଏହା କରିବା ମହାପାପ । ଅବଶ୍ୟ ଆପେ ଆପେ ଗର୍ଭସ୍ରାବ ହୋଇଯିବାରେ ପାପ ଲାଗେ ନାହିଁ । ସଂସାରରେ ଅନେକ ଜୀବ ଆପେ ଆପେ ମରନ୍ତି । ସେମାନଙ୍କୁ ଆମେ ମାରୁ ନ ଥିବାରୁ ଅଥବା ସେମାନଙ୍କ ମରଣ ପାଇଁ ଇଚ୍ଛା କରୁ ନ ଥିବାରୁ ତଦ୍ଦ୍ୱାରା ଆମକୁ ପାପ ଲାଗେ ନାହିଁ ।

**ପ୍ରଶ୍ନ**—ଗର୍ଭରେ ତ ପ୍ରଥମରୁ ଜୀବନ ନ ଥାଏ, ଜୀବନ ସଞ୍ଚାର କିଛିକାଳ ପରେ ହୁଏ । ତେବେ ଗର୍ଭପାତକୁ ପାପ ବୋଲି କାହିଁକି କହିବା?

**ଉତ୍ତର**—ପୁରୁଷର ଗୋଟିଏ ବିନ୍ଦୁ ବୀର୍ଯ୍ୟରେ ହଜାର ହଜାର ଜୀବ ଥାଆନ୍ତି । ସେଥିମଧ୍ୟରୁ ଯେଉଁ ଜୀବଟି ଗର୍ଭାଶୟରେ ରଜ ସହିତ ମିଶିଯାଏ, ପରବର୍ତ୍ତୀ ସମୟରେ ତାହା ବୃଦ୍ଧି ପାଇ ଗର୍ଭ ରୂପ ଧାରଣ କରେ । ଜୀବ ବିନା ବୀର୍ଯ୍ୟ ରଜ ସହିତ ମିଶିପାରେ ନାହିଁ କିଂବା ଗର୍ଭ ମଧ୍ୟ ବଢ଼ିପାରେ ନାହିଁ । ସେହି ଜୀବଠାରେ ପ୍ରାଣଶକ୍ତି ସୂକ୍ଷ୍ମରୂପେ ଥାଏ । ଗର୍ଭକୁ ଆସି ପ୍ରାଣଶକ୍ତି ସ୍ଥୂଳ ହୋଇଯିବାରୁ ଗର୍ଭ ବୃଦ୍ଧି ପାଏ । ଗର୍ଭ ବୃଦ୍ଧି ପାଇବା ପରେ ତାହା ଚଳପ୍ରଚଳ ହେଲେ ଲୋକେ କହନ୍ତି ଯେ ଜୀବ ଗର୍ଭକୁ ଆସିଛି ।

**ପ୍ରଶ୍ନ**—ଆପେ ଆପେ ଗର୍ଭସ୍ରାବ ହେଲେ କ'ଣ କରାଯିବ?

**ଉତ୍ତର**—ଏହା ଏକ ରୋଗ । ଏହି ରୋଗର ଚିକିତ୍ସା କରିବା ଆବଶ୍ୟକ । ଜଣେ ସ୍ତ୍ରୀଲୋକର ପାଞ୍ଚ ଛଅଥର ଗର୍ଭସ୍ରାବ ହେଲା । ଜଣେ ସନ୍ଥ ଗର୍ଭାଶୟକୁ ଥଣ୍ଡା କରିବା ପାଇଁ ଗୋଟିଏ ଉପାୟ ବତାଇଦେଲେ । ଗର୍ଭସଞ୍ଚାର ପରେ ସ୍ତ୍ରୀ ଲୋକଟି ସେହି ଉପାୟ କରିବାରୁ ତା'ର ଗର୍ଭ ରହିଲା । ସକାଳେ ଗାଈର ଦୁଧ ଦୁହିଁବାବେଳେ ବାଲ୍‌ଟି ମୁହଁରେ ଗୋଟିଏ ଦୁଧଛଣା କନା ବନ୍ଧାଗଲା । କନା ଉପରେ କିଛି ମିଶ୍ରିଗୁଣ୍ଡ ରଖି ଗାଈ ଦୁହାଁଗଲା । ସେହି ମିଶ୍ରିମିଶା ସଦ୍ୟ ଦୁଧକୁ କାଳବିଳମ୍ବ ନ କରି ଖାଲି ପେଟରେ ସେ ସ୍ତ୍ରୀଲୋକ ଜଣକ ପିଇଲେ । ମାସେ ପର୍ଯ୍ୟନ୍ତ ଏପରି କରିବାରୁ ତାଙ୍କର ଗର୍ଭସ୍ରାବ ହେଲା ନାହିଁ । ଏବେ ମଧ୍ୟ ତାଙ୍କର ସନ୍ତାନ ଜୀବିତ ଅଛନ୍ତି । ଏହି ରୋଗର ଚିକିତ୍ସା ପାଇଁ ଅନେକ ଆୟୁର୍ବେଦିକ ଔଷଧ ଅଛି । ଅନୁଭବୀ ବୈଦ୍ୟଙ୍କ ଠାରୁ ଔଷଧ ନିଆଯାଇପାରେ ।

**ପ୍ରଶ୍ନ**—କୌଣସି ରୋଗଜନିତ କାରଣରୁ ଗର୍ଭପାତ କରାଇବା ଅନିବାର୍ଯ୍ୟ ହେଲେ କ'ଣ କରାଯିବ?

**ଉତ୍ତର**—ସ୍ତ୍ରୀର ଜୀବନ ରକ୍ଷା ପାଇଁ ଚିକିତ୍ସା କରାଇବା ଉଚିତ। ଯାହା ଘଟିବାର ଥିବ ନିଶ୍ଚୟ ଘଟିବ। ସ୍ତ୍ରୀ ମରିବାର ଥିଲେ ଗର୍ଭପାତ କରାଇ ସୁଦ୍ଧା ସେ ମରିଯିବ। ଆୟୁ ଥିଲେ ଗର୍ଭପାତ ନ କରାଇଲେ ସୁଦ୍ଧା ସେ ମରିବ ନାହିଁ। ତେଣୁ ଗର୍ଭପାତ କରାଇବା ଉଚିତ ନୁହେଁ।

**ପ୍ରଶ୍ନ**—କୁମାରୀ ଅବସ୍ଥାରେ ଗର୍ଭ ରହିଗଲେ କ'ଣ କରାଯିବ?

**ଉତ୍ତର**—ଯେଉଁ ପୁରୁଷ ଯୋଗୁଁ ଗର୍ଭବାସ ହେଲା, ତା' ସହିତ କୁମାରୀର ବିବାହ କରାଇ ଦେବା ଶ୍ରେୟସ୍କର। ତାହା ସମ୍ଭବ ନ ହେଲେ ସୁଦ୍ଧା ଗର୍ଭପାତ କରାଇବା ଅବିଧେୟ। ପ୍ରସବ ପରେ ସନ୍ତାନକୁ କୌଣସି ଅନାଥାଳୟରେ ଭର୍ତ୍ତି କରାଇଦେବା ଉଚିତ ଅଥବା ନିଃସନ୍ତାନ ବ୍ୟକ୍ତି ନେବାକୁ ଚାହୁଁଥିଲେ ଦେଇଦେବା ବିଧେୟ।

କନ୍ୟା ସହିତ କେହି ବଳାତ୍କାର କଲେ ସେହି ବ୍ୟକ୍ତି ମହାପାପୀ ହୁଏ। କନ୍ୟାର ଇଚ୍ଛାରେ ତାହା ଘଟିଲେ, ସେହି କନ୍ୟା ପାପରେ ଭାଗୀ ହୁଏ। ଭୋଗେଚ୍ଛାରୁ ସମସ୍ତ ପାପ ଜାତ ହୁଏ, ଭୋଗେଚ୍ଛା ନ ଥିଲେ ପାପ ଲାଗେ ନାହିଁ। କୁମାରୀ କନ୍ୟା ଗର୍ଭିଣୀ ହେଲେ ତାହାର ମାତାପିତା ନିଜ ଅସାବଧାନତା କାରଣରୁ ପାପଭାଗୀ ହୁଅନ୍ତି। ତେଣୁ କନ୍ୟାକୁ ଶାସନରେ ରଖିବା ଓ ସ୍ୱେଚ୍ଛାଚାରିଣୀ ନ ହେବା ପାଇଁ ଯତ୍ନବାନ୍ ହେବା ମାତାପିତାଙ୍କ କର୍ତ୍ତବ୍ୟ ଅଟେ।

**ପ୍ରଶ୍ନ**—ଗର୍ଭପାତ ନ କରାଇଲେ ଲୋକେ ଜାଣିବେ ଓ କନ୍ୟାର ବଦନାମି ହେବ। କେହି କନ୍ୟାକୁ ବାହା ହେବେ ନାହିଁ। ସେ କ୍ଷେତ୍ରରେ କ'ଣ କରାଯିବ?

**ଉତ୍ତର**—ଯେ ପାପ କରେ, ସେ ନିନ୍ଦିତ ହୁଏ। ଗର୍ଭପାତ କରିବା, ଆତ୍ମହତ୍ୟା କରିବା ଅଥବା ଘରୁ ଲୁଚି କେଉଁଆଡ଼େ ପଳାଇଯିବା—ଏହି ତିନି ପାପରୁ ଉଦ୍ଧାର ପାଇବା ପାଇଁ ଅପବାଦ ସହିବା ଉତ୍ତମ। ଯଦି ଏପରି କନ୍ୟାକୁ କେହି ବିବାହ କରିବା ପାଇଁ ଚାହେଁ ନାହିଁ, ତାହାହେଲେ ସେ ଘରେ ବସି ଭଜନ-ସ୍ମରଣ କରୁ। ତଦ୍ୱାରା ପାପର ପ୍ରାୟଶ୍ଚିତ୍ତ ହେବ।

**ପ୍ରଶ୍ନ**—ଯଦି କୌଣସି ବିବାହିତା ସ୍ତ୍ରୀକୁ କେହି ବଳାତ୍କାର କରେ ଓ ତା'ର ଗର୍ଭ ରହିଯାଏ, ତାହାହେଲେ କ'ଣ କରାଯିବା ଉଚିତ?

**ଉତ୍ତର**—ସେ ସ୍ତ୍ରୀ ଯଥାସମ୍ଭବ ନୀରବ ରହିବା ଶ୍ରେୟସ୍କର। ଏ ଘଟଣା ତା'ର

ପତିକୁ ଜଣାଇଲେ, ସେ ମଧ୍ୟ ନୀରବ ରହିବା ଉଚିତ। ଏଭଳି ଘଟଣା ଘଟିବା ପୂର୍ବରୁ ସାବଧାନ ରହିବା ଉଚିତ ଥିଲା। ସେ ଯାହାହେଉ ପଛେ, ଗର୍ଭପାତ କରାଇବାରେ ମୋର ସମ୍ମତି ନାହିଁ; କାରଣ ଏହା ମହାପାପ।

**ପ୍ରଶ୍ନ**—ପୁଂସ୍ତ୍ୱ ନିରୋଧକ ଓ ଗର୍ଭନିରୋଧକ ଅପରେସନ କରିବାରେ କ୍ଷତି କ'ଣ?

**ଉତ୍ତର**—ଏହା ପ୍ରତ୍ୟକ୍ଷ ଦେଖାଯାଇଛି ଯେ ଅପରେସନ ଦ୍ୱାରା ବହୁଲୋକଙ୍କ ଦେହ ଓ ହୃଦୟ ଦୁର୍ବଳ ହୋଇଛି। ସେମାନଙ୍କୁ ଅନେକ ପ୍ରକାର ରୋଗ ହୋଇଛି, ହେଉଛି ଏବଂ ହେବ ମଧ୍ୟ। ମୁଁ ଶୁଣିଛି ଯେ ଅଣ୍ଡିରା ବାଛୁରିକୁ ବ୍ରତ କରିଦେଲେ ତାହାର ମାଂସରେ ଏକପ୍ରକାର ଶକ୍ତି କମିଯାଏ। ସେଥିପାଇଁ ଇରାକ, ଇରାନ୍ ଆଦି ଦେଶମାନଙ୍କରେ ବ୍ରତ କରାଯାଇ ନ ଥିବା ବାଛୁରି ମାଂସ ଅପେକ୍ଷା ବ୍ରତ ହୋଇଥିବା ବାଛୁରିର ମାଂସ ଶସ୍ତାରେ ମିଳେ। ଅପରେସନ ଦ୍ୱାରା ପୁରୁଷତ୍ୱକୁ ଅବରୋଧ କଲେ ଶକ୍ତି, ଉତ୍ସାହ, ନିର୍ଭୀକତା ଆଦି କମିଯାଏ। ଏପରି ଲୋକ ନପୁଂସକ ହୋଇଯାଆନ୍ତି। ଏମାନଙ୍କ ହାତରୁ ପିତୃପୁରୁଷ ପିଣ୍ଡଜଳ ପାଆନ୍ତି ନାହିଁ*। ଏଭଳି ବ୍ୟକ୍ତିଙ୍କୁ ଦେଖିବା ଅଶୁଭ। ଯାତ୍ରା ସମୟରେ ଏପରି ଲୋକଙ୍କୁ ଦେଖିଲେ କାର୍ଯ୍ୟସିଦ୍ଧି ହୁଏ ନାହିଁ।

ଗର୍ଭନିରୋଧ ଅପରେସନ କରିଥିବା ମାଆମାନେ ଶ୍ୱେତପ୍ରଦର ଓ ରକ୍ତପ୍ରଦର ରୋଗରେ ପୀଡ଼ିତ ହୁଅନ୍ତି। ଏହାର ଚିକିତ୍ସା ନାହିଁ। ଅପରେସନ ଯୋଗୁଁ ରାଜସ୍ଥାନରେ ଶହ ଶହ ସ୍ତ୍ରୀଲୋକ ମଲେଣି। ଆଉ କେତେକ ଭୟଙ୍କର ରୋଗରେ ପୀଡ଼ିତ ଅଛନ୍ତି। ସମାଚାର ପତ୍ରରେ ଏସବୁ ପ୍ରକାଶ ପାଇଛି। ଆମେ ଚିକିତ୍ସକମାନଙ୍କ ଠାରୁ ଶୁଣିଛୁ ଯେ ଅପରେସନ କରିଥିବା ସ୍ତ୍ରୀମାନେ ଉଠାବସା କରିବାବେଳେ ସେମାନଙ୍କର ଆଖି ଜଳକା ମାରି ଯାଉଛି। ଛାତି ଓ ପିଠିରେ ଯନ୍ତ୍ରଣା ହେଉଛି ଏବଂ କାର୍ଯ୍ୟ କରିବା ପାଇଁ ବଳ ପାଉ ନାହିଁ।

ଗର୍ଭଧାରଣ ଶକ୍ତିକୁ ନଷ୍ଟ କରିଥିବା ସ୍ତ୍ରୀମାନଙ୍କୁ ଦେଖିବା ଅଶୁଭ। ଭଗବାନଙ୍କ ପ୍ରଦତ୍ତ ଶକ୍ତିକୁ ନଷ୍ଟ କରିବାରେ କାହାରି ଅଧିକାର ନାହିଁ। ସେପରି କରିବା ଅନଧିକାର ଚେଷ୍ଟା ଓ ଅପରାଧ। ଯେଉଁମାନେ ଅପରେସନ କରି ନିଜର ମାତୃତ୍ୱ ନଷ୍ଟ କରିଛନ୍ତି, ସେମାନେ ତ ନିଜେ ପାପିନୀ, ତା'ଛଡ଼ା ସେମାନେ ଅନ୍ୟମାନଙ୍କୁ ସେଥିପାଇଁ ପ୍ରେରଣା ଦେଇ ନୂଆ ନୂଆ ପାପ କରୁଛନ୍ତି। ଯେପରି ଗୀତା ଅଧ୍ୟୟନ ଅପେକ୍ଷା ଗୀତା ପ୍ରଚାରର ମାହାତ୍ମ୍ୟ ଅଧିକ (୧୮।୬୯), ସେହିପରି ଗର୍ଭ

* ଅଙ୍ଗହୀନାଶ୍ରୋତ୍ରିୟଷଣ୍ଢଶୂଦ୍ରବର୍ଜମ୍ (କାତ୍ୟାୟନଶ୍ରୌତସୂତ୍ରମ୍ ୧।୧।୫)

ଅପରେସନ୍ କରିବା ଅପେକ୍ଷା ସେଥିପାଇଁ ପ୍ରବର୍ତ୍ତାଉଥିବା ଲୋକଙ୍କ ପାପର ମାତ୍ରା ଅଧିକ। ସେମାନେ ଗୋ-ଘାତକମାନଙ୍କ ସଂଖ୍ୟା ବଢାଇବାରେ ସହାୟକ ହେଉଥିବାରୁ ଗୋହତ୍ୟାରୂପୀ ପାପରେ ଭାଗୀଦାର ହେଉଛନ୍ତି। ସରଳହୃଦୟା ମାଆ-ଭଉଣୀମାନେ ଏହା ନ ଜାଣି ପାପ କାର୍ଯ୍ୟ କରି ଦେଉଛନ୍ତି। ଏଥିରୁ ଦୂରେଇ ରହିବା ଉଚିତ।

ଯେକୌଣସି ବ୍ୟକ୍ତି ଯେକୌଣସି ପ୍ରକାର ଅପରାଧ କଲେ ତାହାର ପ୍ରାଣଶକ୍ତି ଶୀଘ୍ର ନଷ୍ଟ ହୁଏ ଓ ସେ ଶୀଘ୍ର ମୃତ୍ୟୁମୁଖରେ ପଡ଼େ। ପାପ କଲେ ବା ମନରେ ପାପ କରିବାର ଭାବନା ଆସିଲେ ଶ୍ୱାସପ୍ରଶ୍ୱାସ ତୀବ୍ରବେଗରେ ଗତି କରେ ଓ ପ୍ରାଣ କ୍ଷୁବ୍ଧ ହୁଏ। ଏହା ଅନୁଭବର କଥା।

ଗର୍ଭନିରୋଧ ଅପରେସନ ବ୍ୟଭିଚାରକୁ ଖୋଲାଖୋଲିଭାବେ ପ୍ରଶ୍ରୟ ଦିଏ। ବ୍ୟଭିଚାର ଘୋର ପାପ। ପଶୁବଳିକୁ 'ଅଭିଚାର'' କୁହାଯାଏ। ତାହାଠାରୁ ଅଧିକ ଅଭିଚାର ହେଉଛି 'ବ୍ୟଭିଚାର'। ଏହାଦ୍ୱାରା ମନୁଷ୍ୟର ଧାର୍ମିକ ଓ ପାରମାର୍ଥିକ ଭାବନା ନଷ୍ଟ ହୋଇଯାଏ। ତାହାର ଅଧୋପତନ ଘଟେ।

ମନୁଷ୍ୟଦେହ କେବଳ ପରମାତ୍ମପ୍ରାପ୍ତି ପାଇଁ ମିଳିଛି। ତାହାକୁ କେବଳ ଭୋଗ ଉପଭୋଗରେ ବ୍ୟବହାର କରିବା ଓ ଭୋଗ ପାଇଁ ଗର୍ଭପାତ, ଗର୍ଭନିରୋଧ, ଅପ୍ରୋପଚାର ଆଦି କରିବା ଘୋର ଅନର୍ଥ। ଗର୍ଭପାତ, ଗର୍ଭନିରୋଧ ଆଦି କର୍ମ ନିପଟ ଭୋଗେଚ୍ଛାରୁ ଜାତ ହୁଏ। ସେଥିରୁ କେହି କେବେ ଧାର୍ମିକ ଓ ପାରମାର୍ଥିକ ଉପକାର ପାଇ ନାହିଁ ବା ପାଇବ ନାହିଁ। ଗର୍ଭନିରୋଧ ଦ୍ୱାରା ଭୋଗପରାୟଣତା ବୃଦ୍ଧି ପାଏ। ଆଜି ମନୁଷ୍ୟ ପଶୁଠାରୁ ମଧ୍ୟ ଅଧିକ ଭୋଗପରାୟଣ ହୋଇ ପଡ଼ିଛି। ଯଦି ସନ୍ତାନ ଚାହୁଁ ନାହଁ, ତେବେ ସଂଯମୀ ହୁଅ। ତାହାହେଲେ ବଳ, ଉତ୍ସାହ, ଧର୍ମପରାୟଣତା ଓ ଈଶ୍ୱର-ପରାୟଣତା ଲାଭ କରିବ। ମନୁଷ୍ୟଜନ୍ମ ସଫଳ ହୋଇଯିବ। ସନ୍ଥଜନ କହିଛନ୍ତି—

**କେ ଶତ୍ରବଃ ସନ୍ତି ନିଜେନ୍ଦ୍ରିୟାଣି ତାନ୍ୟେବ ମିତ୍ରାଣି ଜିତାନି ଯାନି॥**

(ପ୍ରଶ୍ନୋତ୍ତରୀ ୪)

ଅର୍ଥାତ୍ ମନୁଷ୍ୟ ଇନ୍ଦ୍ରିୟଗୁଡ଼ିକର ବଶବର୍ତ୍ତୀ ହେଲେ ସେଗୁଡ଼ିକ ତାର ଶତ୍ରୁ ହୋଇଯାଆନ୍ତି। ଏହା ଫଳରେ ତାହାର ଇହଲୋକ ଓ ପରଲୋକ ନଷ୍ଟ ହୁଏ। ପରନ୍ତୁ ଯେ ଇନ୍ଦ୍ରିୟଗୁଡ଼ିକୁ ଜୟ କରେ, ସେଗୁଡ଼ିକ ତାହାର ମିତ୍ର ହୋଇଯାଆନ୍ତି। ଏହା ଫଳରେ ତାହାର ଇହଲୋକ ଓ ପରଲୋକରେ ମଙ୍ଗଳ ହୁଏ। ତେଣୁ ଗୀତାରେ କୁହାଯାଇଛି।

ଉଦ୍ଧରେଦାତ୍ମନାତ୍ମାନଂ ନାତ୍ମାନମବସାଦୟେତ୍ ।
ଆତ୍ମୈବ ହ୍ୟାତ୍ମନୋ ବନ୍ଧୁରାତ୍ମୈବ ରିପୁରାତ୍ମନଃ ॥

(ଗୀତା ୬ । ୫)

"ନିଜେ ନିଜକୁ ଉଦ୍ଧାର କର । ନିଜର ପତନ କର ନାହିଁ । କାରଣ, ନିଜେ ହିଁ ନିଜର ମିତ୍ର ଓ ନିଜେ ହିଁ ନିଜର ଶତ୍ରୁ ।"

**ପ୍ରଶ୍ନ**—ଗର୍ଭପାତ କରିବା ଦ୍ୱାରା କି କ୍ଷତି ହୁଏ?

**ଉତ୍ତର**—କୃତ୍ରିମ ଉପାୟରେ ଗର୍ଭସ୍ରାବ ଓ ଗର୍ଭପାତ କରିବା ଦ୍ୱାରା ସ୍ତ୍ରୀର ଶରୀର ଦୁର୍ବଳ ହୋଇଯାଏ । ଯୌବନ କାଳରେ ଦୁର୍ବଳତା ବୋଧ ନ ହେଲେ ସୁଦ୍ଧା ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ତାହା ଜଣାପଡ଼େ । ଦେହରେ ରକ୍ତ ତିଆରି ହେଉଥିବା ପର୍ଯ୍ୟନ୍ତ ଦୁର୍ବଳତା ଜଣାଯାଏ ନାହିଁ, ବାର୍ଦ୍ଧକ୍ୟରେ ତାହା ନିଶ୍ଚିତରୂପେ ଅନୁଭୂତ ହେବ । ବହୁ ସ୍ତ୍ରୀଲୋକ ପ୍ରଦର ରୋଗରେ ପୀଡ଼ିତ ହୁଅନ୍ତି । ନିରନ୍ତର ରକ୍ତସ୍ରାବର ଆଶଙ୍କା ରହେ ।

ମାଆ ହେବା ନାରୀ ପକ୍ଷରେ ନୈସର୍ଗିକ ବିଧାନ ହୋଇଥିବାରୁ ସନ୍ତାନ ଜନ୍ମ ହେଲେ ନାରୀର ଦେହ ସେତେ ଖରାପ ହୁଏ ନାହିଁ । ମନେରଖିବା ଉଚିତ ଯେ ସ୍ୱାଭାବିକ କାରଣରୁ କଦାପି କୁଫଳ ମିଳେ ନାହିଁ । କୃତ୍ରିମତାରୁ ହିଁ କୁଫଳ ମିଳେ ।

**ପ୍ରଶ୍ନ**—ଗୋଟିଏ ଦୁଇଟି ସନ୍ତାନର ମାଆ ହେବା ପରେ ସ୍ତ୍ରୀ ଗର୍ଭନିରୋଧକ ଅସ୍ତ୍ରୋପଚାର କଲେ କ୍ଷତି କ'ଣ?

**ଉତ୍ତର**—ଅସ୍ତ୍ରୋପଚାର ପରେ ସେ 'ସ୍ତ୍ରୀ' ସଂଜ୍ଞା ହରାଇ ବସେ । ଯାହାର ଉଦରରେ ଶୁକ୍ର ଓ ଶୋଣିତ ମିଶି ଗର୍ଭ ହୁଏ, ତାହାର ନାମ ସ୍ତ୍ରୀ* । ଗର୍ଭଧାରଣ କରିପାରୁ ନ ଥିବା ମହିଳା ସ୍ତ୍ରୀ ପଦବାଚ୍ୟ ନୁହେଁ । ସେହିପରି ଗର୍ଭସ୍ଥାପନ କରିପାରୁ ନ ଥିବା ବ୍ୟକ୍ତି ପୁରୁଷ ପଦବାଚ୍ୟ ନୁହେଁ । ଅପରେସନ ଦ୍ୱାରା ସନ୍ତାନୋତ୍ପାଦିକା ଶକ୍ତି ନଷ୍ଟ କରୁଥିବା ପୁରୁଷର ନାମ ତ ନପୁଂସକ, ପରନ୍ତୁ ସେଭଳି ସ୍ତ୍ରୀର କେଉଁ ନାମ ହେବ, ତାହା ମୋତେ ଜଣା ନାହିଁ ।

'ପରିବାର ନିୟନ୍ତ୍ରଣ' ନାରୀଜାତି ପାଇଁ ଘୋର ଅପମାନ । ଏହା ନାରୀଜାତିକୁ କେବଳ ଭୋଗ୍ୟା ରୂପରେ ସୀମିତ ରଖେ । କେହି କଣ ସନ୍ତାନ ପ୍ରାପ୍ତି ଉଦ୍ଦେଶ୍ୟରେ ବେଶ୍ୟାଗମନ କରେ? ଅତଏବ ସନ୍ତାନ ଇଚ୍ଛା ନ କରି ଭୋଗ ଉପଭୋଗ କରିବା ବେଶ୍ୟାଗମନ ସଙ୍ଗେ ସମାନ । ଏହା ନାରୀଜାତି ପ୍ରତି ଘୋର

---

* 'ଷ୍ଟ୍ୟୈ ଶବ୍ଦସଂଘାତୟୋଃ' । ସ୍ତ୍ୟାୟତଃ—ସଂଗତେ ଭବତଃ ଅସ୍ୟାଂ ଶୁକ୍ରଶୋଣିତେ ଇତି ସ୍ତ୍ରୀ । (ସିଦ୍ଧାନ୍ତକୌମୁଦୀ, ବାଲମନୋରମା)

ଅବମାନନା । ମାଆ ହେବାରେ ନାରୀର ସମ୍ମାନ ଥାଏ, ଭୋଗ୍ୟା ହେବାରେ ନୁହେଁ । ଅପରେସନ ଦ୍ୱାରା ମାତୃଶକ୍ତିକୁ ନଷ୍ଟ କଲେ ନାରୀ କେବଳ ପାଦର ଜୋତା ପରି ଭୋଗ୍ୟବସ୍ତୁ ହୋଇ ରହିଯାଏ । ଏହା କଣ ନାରୀ ଜାତିର ସମ୍ମାନ?

**ପ୍ରଶ୍ନ**—ଯାହାର ସ୍ୱାଭାବିକଭାବରେ ସନ୍ତାନ ହୁଏ ନାହିଁ, ତାକୁ ଦୋଷ ଲାଗେ କି?

**ଉତ୍ତର**—ତାକୁ ଦୋଷ ଲାଗେ ନାହିଁ । ପରନ୍ତୁ କୃତ୍ରିମ ଉପାୟରେ ମାତୃଶକ୍ତି ନଷ୍ଟ କଲେ ପାପ ହୁଏ ।

**ପ୍ରଶ୍ନ**—ଗର୍ଭଧାରଣ ପୂର୍ବରୁ ଗର୍ଭନିରୋଧକ ବଟିକା ବ୍ୟବହାର କଲେ ସ୍ତ୍ରୀକୁ ପାପ ଲାଗେ କି?

**ଉତ୍ତର**—ଜୀବ ମନୁଷ୍ୟଶରୀର ଧାରଣ କରି ପରମାତ୍ମାଙ୍କୁ ପ୍ରାପ୍ତ କରିପାରିବ; ନିଜକୁ ଓ ଅନ୍ୟମାନଙ୍କୁ ଉଦ୍ଧାର କରି ପାରିବ । ପରନ୍ତୁ ନିଜ ଭୋଗେଚ୍ଛାର ବଶୀଭୂତ ହୋଇ ଜୀବକୁ ଜନ୍ମ ହେବାର ସୁଯୋଗ ନ ଦେବା ପାପ ଅଟେ । ଗୀତାରେ ଭଗବାନ କାମନା ଅର୍ଥାତ୍ ଭୋଗେଚ୍ଛା ଓ ସୁଖେଚ୍ଛାକୁ ସବୁ ପାପର ମୂଳ କାରଣ ବୋଲି କହିଛନ୍ତି (୩ । ୩୭) । ପରିବାର ନିୟନ୍ତ୍ରଣର ଉଦ୍ଦେଶ୍ୟ ହେଉଛି ଭୋଗେଚ୍ଛା । ତେଣୁ ବଟିକା ଖାଇ ସନ୍ତତି ନିରୋଧ କରିବା ପାପ ଅଟେ ।

**ପ୍ରଶ୍ନ**—କୌଣସି ସ୍ତ୍ରୀ ନିଜ ସ୍ୱାମୀକୁ ନ ଜଣାଇ ଗର୍ଭପାତ କଲେ କ'ଣ କରାଯିବ?

**ଉତ୍ତର**—ଏଭଳି ସ୍ତ୍ରୀକୁ ପରିତ୍ୟାଗ କରିବା ପାଇଁ ଶାସ୍ତ୍ରରେ ନିର୍ଦ୍ଦେଶ ରହିଛି—**'ତସ୍ୟାସ୍ତ୍ୟାଗୋ ବିଧୀୟତେ'** (ପାରାଶରସ୍ମୃତି ୪ । ୨୦) ।

ଗର୍ଭପାତ କରିବା ମହାପାପ ଏବଂ ତାହା ସ୍ୱାମୀକୁ ଲୁଗ୍ଢ଼ଇବା ବହୁତ ବଡ଼ ଅପରାଧ । ଲୁଚିକରି କରାଯାଇଥିବା ପାପ ପାଇଁ ଭୟଙ୍କର ଦଣ୍ଡ ମିଳେ । ସନ୍ତାନ ପାଇବାର ଇଚ୍ଛା ନ ଥିଲେ ସଂଯମୀ ହେବା ଆବଶ୍ୟକ । ସଂଯମୀ ହେବା ପାପ ବା ଅନ୍ୟାୟ ନୁହେଁ । ତାହା ବଡ଼ ପୁଣ୍ୟ, ତ୍ୟାଗ ଓ ତପସ୍ୟା ।

**ପ୍ରଶ୍ନ**—ସରକାର ଆଜିକାଲି ଗର୍ଭପାତ ଓ ପରିବାର ନିୟନ୍ତ୍ରଣ ପ୍ରଭୃତିକୁ ଉତ୍ତମ କାର୍ଯ୍ୟ ବୋଲି ପ୍ରଚ୍ୱର କରୁଛନ୍ତି । ପ୍ରକୃତରେ ଏହା ପାପ ନୁହେଁ କି?

**ଉତ୍ତର**—କେହି ମାନୁ ବା ନ ମାନୁ ନିଶ୍ଚୟ ପାପ । ଯେତେ ସବୁ ପାପ ଅଛି, ସେସବୁ କାହାର ମାନିବା ବା ନ ମାନିବା ଉପରେ ନିର୍ଭର କରେ ନାହିଁ । ବେଦ, ଶାସ୍ତ୍ର ଓ ସନ୍ଥମାନଙ୍କ ବଚନରେ କେଉଁଟି ପାପ ଓ କେଉଁଟି ପୁଣ୍ୟ ତାହା ନିରୂପିତ ହୋଇଛି ।

ପାପକର୍ମ କଲେ ପାପ ଲାଗେ ଓ ତା'ର ଫଳ ଭୋଗିବାକୁ ପଡ଼େ । ମୁଁ ଦେଖିଛି, ବଳି ଦେବାବେଳେ ପଶୁକୁ ଯେଉଁ ଗଛରେ ଟାଙ୍ଗି ଦିଆଯାଏ, ପାପ

କାରଣରୁ ତାହା ମରିଯାଏ। ଧନ ଲୋଭରେ ପଶୁଙ୍କୁ ମାରୁଥିବା କଂସେଇର ହାତ ଅଚଳ ହୋଇଯାଏ, ଫଳରେ ସେ ପରବର୍ତ୍ତୀ କାଳରେ ହାତରେ ଛୁରୀ ବାନ୍ଧି ପଶୁକୁ ହତ୍ୟା କରେ। ବାଘର ଛଅ ସାତଟି ଛୁଆ ହୁଅନ୍ତି ଓ ହରିଣର ଗୋଟିଏ ଦୁଇଟି ଛୁଆ ହୁଅନ୍ତି। ତଥାପି ଦଳ ଦଳ ହରିଣ ଦେଖାଯାଆନ୍ତି, ମାତ୍ର ବାଘଙ୍କର ଦଳ ନ ଥାଏ। ଏହାର ଅର୍ଥ, ହିଂସ୍ରକର ପରମ୍ପରା ଅଧିକ କାଳ ଚ଼ଲେ ନାହିଁ।

ଜଣେ ସନ୍ଥଙ୍କୁ କେହି ଜଣେ ପଚ଼ାରିଲେ—ଯେଉଁ ଶାସ୍ତ୍ର ଓ ସମ୍ପ୍ରଦାୟମାନଙ୍କରେ ବଳିଦେବାକୁ ବା କୁର୍ବାନି କରିବାକୁ ଆଦେଶ ଦିଆଯାଇଛି, ତାକୁ ପାଳନ କରୁଥିବା ଲୋକଙ୍କୁ ପାପ ଲାଗେ ନାହିଁ କି? ସେ ଉତ୍ତର ଦେଲେ ଯେଉଁ ବ୍ୟକ୍ତି ବଳି ଦିଏ ବା କୁର୍ବାନି କରେ, ସେ ଯଦି ଛଅ ମାସ ପର୍ଯ୍ୟନ୍ତ ହୃଦୟର ସହ ଭଗବାନଙ୍କ ନାମ ସ୍ମରଣ କରିବ, ତେବେ ତା'ର ମଧ୍ୟ ଏଭଳି କର୍ମ କରିବାକୁ ଇଚ୍ଛା ହେବ ନାହିଁ। ଯାହାର ଅନ୍ତଃକରଣ ଶୁଦ୍ଧ, ସେ ଶାସ୍ତ୍ରର ନିର୍ଦ୍ଦେଶ ଥିବା ସତ୍ତ୍ୱେ ପାପ କରିପାରେ ନାହିଁ। ତେଣୁ ଯେଉଁସବୁ ଶାସ୍ତ୍ରରେ ବଳିପ୍ରଥା ପରି ନିକୃଷ୍ଟ ଉପଦେଶ ଅଛି, ସେସବୁ ମାନିବା ଉଚିତ ନୁହେଁ।

ଧର୍ମଶାସ୍ତ୍ର ଓ ଅର୍ଥଶାସ୍ତ୍ର ପୃଥକ୍ ପୃଥକ୍। ଧର୍ମଶାସ୍ତ୍ରରୁ ମନୁଷ୍ୟ କର୍ତ୍ତବ୍ୟଜ୍ଞାନ ଲାଭ କରେ। ସେଥିରୁ ଜ୍ଞାନଲାଭ କରି ସେ ଲୋକ-ପରଲୋକକୁ ଉନ୍ନତ କରେ। ଅର୍ଥଶାସ୍ତ୍ର ଦୃଷ୍ଟଫଳର ବର୍ଣ୍ଣନା କରେ। ଯେଉଁ ମନୁଷ୍ୟ କାମନାର ବଶୀଭୂତ ହୋଇ ଦୃଷ୍ଟଫଳ (ଧନସମ୍ପତ୍ତି, ପୁତ୍ର, ସ୍ୱର୍ଗ ଆଦି) ପାଇବା ପାଇଁ ଅର୍ଥଶାସ୍ତ୍ରର ପରାମର୍ଶ ଅନୁସାରେ ପାପ କରେ, ସେ ପାପରେ ଭାଗୀ ହୁଏ। ଅର୍ଥଶାସ୍ତ୍ରରେ ସକାମଭାବନା ମୁଖ୍ୟ ହୋଇଥିବା ସ୍ଥଳେ କାମନା ହିଁ ସମସ୍ତ ପାପର ମୂଳ (ଗୀତା ୩।୩୭)। ଯେ ଶହେ ଯଜ୍ଞ କରି ଇନ୍ଦ୍ର (ଶତକ୍ରତୁ) ହୁଅନ୍ତି, ତାଙ୍କୁ ମଧ୍ୟ ହିଂସା କରିବାର ଦୋଷ ଲାଗେ। ସେହି ହିଂସାର ଫଳରୂପେ ଇନ୍ଦ୍ରଙ୍କର ମଧ୍ୟ ପରାଜୟ ଘଟେ। ସେ ଭୟଭୀତ ହୋଇ ଏଣେତେଣେ ଲୁଚନ୍ତି। ତାଙ୍କ ହୃଦୟରେ ଜ୍ୱଳନ ହୁଏ। ଏହିରୂପେ ସେ ହିଂସାର ଫଳ ପାଆନ୍ତି। ଏହାର ସାରାଂଶ ହେଲା, ଧର୍ମଶାସ୍ତ୍ର ଓ ଅର୍ଥଶାସ୍ତ୍ର ମଧ୍ୟରେ ଧର୍ମଶାସ୍ତ୍ର ହେଉଛି ଶ୍ରେଷ୍ଠ ଓ ବଳବାନ୍*। ତାକୁ ହିଁ ମାନିବାକୁ ହେବ।

ଆଜିକାଲି ସରକାର ଗର୍ଭପାତକୁ ପାପ ବୋଲି ଭାବୁ ନାହାନ୍ତି। ପରନ୍ତୁ କେହି ମାନୁ ବା ନ ମାନୁ, ପାପ ନିଶ୍ଚୟ ଲାଗିବ। ପୂର୍ବକାଳରେ ରାଜାମାନେ ଯଦି ନିଷିଦ୍ଧ

* ସ୍ମୃତ୍ୟୋର୍ବିରୋଧେ ନ୍ୟାୟସ୍ତୁ ବଳବାନ୍ ବ୍ୟବହାରତଃ।
ଅର୍ଥଶାସ୍ତ୍ରାତ୍ତୁ ବଳବଦ୍ଧର୍ମଶାସ୍ତ୍ରମିତି ସ୍ଥିତିଃ॥

କାର୍ଯ୍ୟ କରିବା ପାଇଁ ପ୍ରଜାଙ୍କୁ ନିର୍ଦ୍ଦେଶ ଦେଉଥିଲେ, ତେବେ ରାଜା ଓ ପ୍ରଜା ଉଭୟଙ୍କୁ ଏହି କାରଣରୁ ପାପ ଲାଗୁଥିଲା । (ଉଦାହରଣସ୍ୱରୂପ—ରାଜା ବେଣ ସ୍ୱୟଂ ନିଷିଦ୍ଧ କାର୍ଯ୍ୟ କଲେ ଓ ପ୍ରଜାଙ୍କ ଦ୍ୱାରା କରାଇଲେ ।) ସରକାର ଆଜିକାଲି ଗର୍ଭପାତ ପରି ନିଷିଦ୍ଧ କାର୍ଯ୍ୟ ନିମନ୍ତେ ପ୍ରେରଣା ଦେଉଛନ୍ତି । ସରକାର ଓ ପାପ କରୁଥିବା ଜନତା ଉଭୟଙ୍କୁ ଏ ପାପ ଲାଗିବ ।

**ପ୍ରଶ୍ନ**—ରାମଚରିତମାନସରେ କୁହାଯାଇଛି— ***'ସମରଥ କହୁଁ ନହିଁ ଦୋଷୁ ଗୋସାଇଁ । ରବି ପାୱକ ସୁରସରି କୀ ନାଈଁ ॥'*** (ବାଲ. ୬୯ । ୪) । ଯାହାକୁ ରାଜ୍ୟ ମିଳିଥାଏ, ସେ ରାଜା ବା ସରକାର ସମର୍ଥ । ତାଙ୍କୁ କାହିଁକି ପାପ ଲାଗିବ?

**ଉତ୍ତର**—ସେ ସମର୍ଥ ନୁହନ୍ତି । ଯେଉଁମାନଙ୍କ ଠାରେ ଅନ୍ୟର ଦୋଷକୁ ନଷ୍ଟ କରିବାର ଶକ୍ତି ଥାଏ, ସେହିମାନେ ସମର୍ଥ । ସୂର୍ଯ୍ୟ ଅପବିତ୍ରକୁ ପବିତ୍ର କରେ ଓ ଅଶୁଦ୍ଧ ଜଳକୁ ଶୁଦ୍ଧ କରେ । ସମୁଦ୍ରର କ୍ଷାରଜଳକୁ ଆକର୍ଷଣ କରିନେଇ ମଧୁର ଜଳରେ ପରିଣତ କରେ । ପରନ୍ତୁ ଏହା କରି ସୁଦ୍ଧା ନିଜେ ଅଶୁଦ୍ଧ ହୁଏ ନାହିଁ । ଅଗ୍ନି ଆବର୍ଜନାକୁ ଜଳାଇ ଦିଏ, ସବୁ ଭକ୍ଷଣ କରେ, ସବୁ ଶୁଦ୍ଧ କରେ; ପରନ୍ତୁ ନିଜେ ଅଶୁଦ୍ଧ ହୁଏ ନାହିଁ । ଗଙ୍ଗାମାତା ଅପବିତ୍ର ଜଳକୁ ପବିତ୍ର କରନ୍ତି, ସମସ୍ତଙ୍କର ପାପ ନାଶ କରନ୍ତି; ପରନ୍ତୁ ତାଙ୍କୁ ଦୋଷ ଲାଗେ ନାହିଁ । ସୁତରାଂ ଯେ ଅଶୁଦ୍ଧକୁ ଶୁଦ୍ଧ କରେ, ଦୋଷ ନାଶ କରେ ଓ ସ୍ୱୟଂ ପୂର୍ବପରି ନିର୍ମଳ ରହେ, ସେ ସମର୍ଥ । ଯାହାକୁ ରାଜ୍ୟ ଓ ବୈଭବ ମିଳିଛି, ସେ ଯେ ସମର୍ଥ—ଏଭଳି ଭାବିବା ଯଥାର୍ଥ ନୁହେଁ ।

ପଦ-ପଦବୀ, ଅଧିକାର, ବୈଭବ ଯୋଗୁଁ କେହି ସମର୍ଥ ହୋଇଯାଏ ନାହିଁ; କାରଣ ତାହାର ସାମର୍ଥ୍ୟ ପଦ-ପଦବୀର ଅଧୀନ । ଯେପର୍ଯ୍ୟନ୍ତ କ୍ଷମତା ଓ ଅଧିକାର ଥାଏ, ସେପର୍ଯ୍ୟନ୍ତ ସାମର୍ଥ୍ୟ ରହେ । ପରେ ତାହା ରହେ ନାହିଁ । ମିଳିଥିବା ପଦ, ଅଧିକାର ପ୍ରଭୃତିକୁ ଯେ ନିଜର ସାମର୍ଥ୍ୟ ମନେକରେ, ସେ ପ୍ରକୃତରେ ଅସମର୍ଥ; କାରଣ ସେହି ସାମର୍ଥ୍ୟ ଅନ୍ୟ ଉପରେ ନିର୍ଭରଶୀଳ । ସୂର୍ଯ୍ୟ, ଅଗ୍ନି, ଗଙ୍ଗାମାତା—ଏମାନେ ପ୍ରକୃତରେ ସମର୍ଥ । କାହାର ଅଧୀନରେ ନ ରହି, କୌଣସି କ୍ଷମତା ଓ ଅଧିକାର ବଳରେ ବଳୀୟାନ ନ ହୋଇ ଏମାନେ ସମର୍ଥ ଅଟନ୍ତି । ଏହା ଏମାନଙ୍କ ନିଜର ସାମର୍ଥ୍ୟ । ଯେଉଁମାନେ କ୍ଷମତା ଓ ଅଧିକାର ମୋହରେ ମଦମତ୍ତ ହୋଇ ନିଷିଦ୍ଧ କାର୍ଯ୍ୟ କରନ୍ତି ଓ ସେଥିପାଇଁ ପ୍ରେରଣା ଦିଅନ୍ତି, ସେମାନେ ସାମର୍ଥ୍ୟର ଦୁରୁପଯୋଗ କରନ୍ତି । ସେହି ସାମର୍ଥ୍ୟ ପାପକୁ ଦୂର କରିବା ପରିବର୍ତ୍ତେ ବୃଦ୍ଧି କରେ । ତେଣୁ ଯଥାର୍ଥରେ ସାମର୍ଥ୍ୟ ନ ଥିବା ସରକାରକୁ ସମର୍ଥ ବୋଲି ବିଚାରି ତାହାର ପ୍ରେରଣାରେ ପ୍ରଜାମାନେ ପାପ କରିବା ଉଚିତ ନୁହେଁ ।

**ପ୍ରଶ୍ନ**—ଡାକ୍ତରମାନେ ସରକାରଙ୍କ ଆଦେଶରେ ଗର୍ଭପାତ, ଗର୍ଭନିରୋଧ, ଅସ୍ତ୍ରୋପଚାର ଆଦି କରନ୍ତି। ଏଥିରେ ସେମାନଙ୍କର ପାପ ହୁଏ କି?

**ଉତ୍ତର**—ସେମାନଙ୍କୁ ନିଶ୍ଚିତ ଭାବରେ ପାପ ଲାଗିବ। ପାପର କାରଣ ହେଉଛି ଲୋଭ। ଲୋଭ ପାଇଁ ସେମାନେ ଅସଂଖ୍ୟ ଜୀବଙ୍କୁ ହତ୍ୟା କରନ୍ତି। ଏପରି ଘୃଣିତ କାର୍ଯ୍ୟ ମାଧ୍ୟମରେ ଅର୍ଜନ କରୁଥିବା ଧନର ଅନ୍ନ ଖାଇ ସେମାନେ ମହାପାପୀ ହୁଅନ୍ତି। ଶାସ୍ତ୍ରରେ କୁହାଯାଇଛି ଯେ ଗର୍ଭପାତ କରିଥିବା ସ୍ତ୍ରୀ ଅନ୍ନକୁ ଦେଖିଦେବା ମାତ୍ରେ, ତାହା ଅଭକ୍ଷ୍ୟ ହୋଇଯାଏ—

**ଭ୍ରୂଣଘ୍ନାବେକ୍ଷିତଂ ଚୈବ ସଂସ୍ପୃଷ୍ଟଂ ଚାପ୍ୟୁଦକ୍ୟୟା।**
**ପତତ୍ରିଣାଽବଲୀଢଂ ଚ ଶୁନା ସଂସ୍ପୃଷ୍ଟମେବ ଚ॥**

(ମନୁସ୍ମୃତି ୪।୨୦୮)

ଅର୍ଥାତ୍ ଗର୍ଭହତ୍ୟା କରିଥିବା ବ୍ୟକ୍ତି ଦେଖିଥିବା, ରଜସ୍ୱଳା ସ୍ତ୍ରୀ ସ୍ପର୍ଶ କରିଥିବା, ପକ୍ଷୀ ଖାଇଥିବା ଓ କୁକୁର ଛୁଇଁଥିବା ଅନ୍ନ ଅଭକ୍ଷ୍ୟ ଅଟେ।

ଚାକିରିରେ ନିଜ ସମୟ ଦେଇ କାର୍ଯ୍ୟ କରି ଅର୍ଥ ସଂଗ୍ରହ କରାଯାଏ; ନିଜ ଧର୍ମ, କର୍ତ୍ତବ୍ୟ, ସତ୍କର୍ମ ପାଇଁ ଧନ ନିଆଯାଏ ନାହିଁ। ପାପ, ଅନ୍ୟାୟ, ହତ୍ୟା, ହିଂସା ଆଦି କରି ଧନ ନେବା ନିପଟ ପାପ ଅଟେ। କୌଣସି ମାଲିକ ପାପ, ଅନ୍ୟାୟ କରିବା ପାଇଁ କହିଲେ, ଭୃତ୍ୟ ନମ୍ରତାପୂର୍ବକ ତାଙ୍କୁ କହିବେ—ମୁଁ ଆପଣଙ୍କ କାର୍ଯ୍ୟରେ ଘଣ୍ଟାଏ ବା ଦୁଇଘଣ୍ଟା ଅଧିକ ସମୟ ଦେଇ ପାରିବି, କିନ୍ତୁ ପାପ ଓ ହିଂସା କରିବା ପାଇଁ ବାଧ୍ୟ କରନ୍ତୁ ନାହିଁ। ଆପଣ ମୋତେ ଏହି କାର୍ଯ୍ୟରେ ରଖନ୍ତୁ ବା ନ ରଖନ୍ତୁ—ଏହା ଆପଣଙ୍କ ଇଚ୍ଛା।

ଜଣେ ବ୍ୟକ୍ତି ଗର୍ଭପାତ, ଗର୍ଭନିରୋଧ ଆଦି କାର୍ଯ୍ୟ ନ କରିବାରୁ ତାକୁ ଚାକିରିରୁ ବରଖାସ୍ତ କରାଗଲା। ସେ ମକଦ୍ଦମା କରି ଜିତିଲା। ତାକୁ ପୁଣି ଚାକିରି ମିଳିଲା। ଯଦି ରାଷ୍ଟ୍ରର ଏହା ଆଇନ, ତେବେ ସମସ୍ତ ରାଷ୍ଟ୍ରବାସୀଙ୍କ ପାଇଁ ଲାଗୁ ହେବା ବିଧେୟ। ଖ୍ରୀଷ୍ଟିୟାନ, ମୁସଲମାନ, ପାର୍ଶୀଙ୍କୁ ଛାଡ଼ି କେବଳ ହିନ୍ଦୁମାନଙ୍କ ପାଇଁ କୌଣସି ରାଷ୍ଟ୍ରୀୟ ଆଇନ ପ୍ରୟୋଗ କରିବା ଉଚିତ ନୁହେଁ। କୌଣସି ସ୍ୱତନ୍ତ୍ର ଜାତି ବା ସମ୍ପ୍ରଦାୟକୁ ପାପ କରିବା ପାଇଁ ବାଧ୍ୟ କରିବା ଓ ପାପ କରିବା ପାଇଁ କାନୁନ ତିଆରି କରିବା ସରକାରଙ୍କ ପକ୍ଷରେ ଉଚିତ ନୁହେଁ।

**ପ୍ରଶ୍ନ**—କେହି ଭୁଲ୍‌ବଶତଃ ଅଥବା ଅଜ୍ଞାନରେ ନିଜର ଗର୍ଭନିରୋଧ ଅସ୍ତ୍ରୋପଚାର କରାଇଥିଲେ, କଣ କରିବେ?

**ଉତ୍ତର**—ଡାକ୍ତରମାନେ କହନ୍ତି ଯେ ଅସ୍ତ୍ରୋପଚାରରେ କେବଳ ନାଡ଼ି

କଟାଯାଇଥିଲେ ତାକୁ ପୁନରାୟ ଯୋଡ଼ି ଦିଆଯାଇପାରେ। ପରନ୍ତୁ ଯାହାର ଗର୍ଭାଶୟ ବାହାର କରି ଦିଆଯାଇଥାଏ, ତା'ପାଇଁ ଆଉ ପ୍ରତିକାର ନାହିଁ। ଅତଏବ କଟା ନାଡ଼ିକୁ ଯୋଡ଼ିଦେବା ଉଚିତ। ନାଡ଼ି ଯୋଡ଼ିବା ପରେ ପୁଣି ସନ୍ତାନ ହେବାର ଅନେକ ଉଦାହରଣ ଅଛି। ଯେଉଁମାନେ ଏପରି କରି ପୁଣି ପୁରୁଷତ୍ୱ ଓ ସ୍ତ୍ରୀତ୍ୱ ଲାଭ କରିଥିବେ, ସେମାନେ ପୂର୍ବ ଅପରାଧ ପାଇଁ ପଶ୍ଚାତ୍ତାପ କଲେ ସେମାନଙ୍କ ହାତରୁ ପିତୃପୁରୁଷ ପିଣ୍ଡଜଳ ଗ୍ରହଣ କରି ପାରନ୍ତି। ସନ୍ତାନ ଆବଶ୍ୟକ ନ ଥିଲେ ବ୍ରହ୍ମଚର୍ଯ୍ୟ ପାଳନ କରିବା ଉଚିତ। ଏହାଦ୍ୱାରା ତେଜ, ଓଜ ଓ ଉତ୍ସାହ ବଢ଼େ।

**ପ୍ରଶ୍ନ**—କେହି ଅଜ୍ଞାନବଶତଃ ନିଜର ଗର୍ଭପାତ କରାଇଥିଲେ ସେ କିପରି ତାହାର ପ୍ରାୟଶ୍ଚିତ୍ତ କରିବ?

**ଉତ୍ତର**—ସେ ଏକବର୍ଷ ପର୍ଯ୍ୟନ୍ତ ପ୍ରତ୍ୟହ ଏକଲକ୍ଷ ରାମନାମ ଜପ କରିବ। ପରନ୍ତୁ ଯେ ଜାଣିଶୁଣି ଗର୍ଭପାତ କରାଉଛି, ସେ ଏହି ପ୍ରକାର ନାମଜପ କଲେ ସୁଦ୍ଧା ତାହାର ପାପର ପ୍ରାୟଶ୍ଚିତ୍ତ ହୁଏ ନାହିଁ। ତାକୁ ପାପର ଦଣ୍ଡ ନିଶ୍ଚୟ ଭୋଗିବାକୁ ହୁଏ। ଏହାର କାରଣ ହେଉଛି, ଯେଉଁ ନାମ ମହାପାପକୁ ନାଶ କରେ, ସେହି ନାମର ଆଶ୍ରୟରେ ପାପ କଲେ ନାମ ତାକୁ ରକ୍ଷା କରେ ନାହିଁ। ସେହି ପାପ ନଷ୍ଟ ନ ହୋଇ ବଜ୍ରଲେପ ପରି ଦୃଢ଼ ହୋଇଯାଏ। ପ୍ରଥମେ ସେ ବିନା ନାମରେ ପାପ କରିବା ପାଇଁ ଡରୁ ଥିଲା, ମାତ୍ର ବର୍ତ୍ତମାନ ସେ ନାମର ଆଶ୍ରୟରେ ପାପ କରିବା ପାଇଁ ଡରୁ ନାହିଁ। ଏହା ନାମର ଦୁରୁପଯୋଗ। ଏହି ନାମାପରାଧ ପାଇଁ ତାହାକୁ ନିଶ୍ଚିତ ଦଣ୍ଡ ଭୋଗିବାକୁ ପଡ଼ିବ।

**ପ୍ରଶ୍ନ**—ପରିବାର ନିୟନ୍ତ୍ରଣ ନ କଲେ ଜନସଂଖ୍ୟା ବହୁତ ବଢ଼ିଯିବ, ଫଳରେ ଲୋକଙ୍କୁ ଖାଦ୍ୟପଦାର୍ଥ ମିଳିବ ନାହିଁ। ତାହେଲେ ସେମାନେ ବଞ୍ଚିବେ କିପରି?

**ଉତ୍ତର**—ଏହି ପ୍ରଶ୍ନ ଆଦୌ ଯୁକ୍ତିଯୁକ୍ତ ନୁହେଁ। ଯେଉଁଠାରେ ମନୁଷ୍ୟ ଜାତ ହୁଅନ୍ତି, ସେଠାରେ ଖାଦ୍ୟଶସ୍ୟ ମଧ୍ୟ ଉତ୍ପନ୍ନ ହୁଏ। ଭଗବାନଙ୍କ ସୃଷ୍ଟିରେ ଏପରି ତ୍ରୁଟି ନାହିଁ ଯେ ମନୁଷ୍ୟ ଜନ୍ମ ହେବେ, ଅଥଚ ଖାଦ୍ୟପଦାର୍ଥ ନ ଥିବ।

**ପ୍ରାରବ୍ଧ ପହଲେ ରଚା, ପୀଛେ ରଚା ସରୀର।**
**ତୁଲସୀ ଚିଂତା କ୍ୟୋଁ କରେ, ଭଜ ଲେ ଶ୍ରୀରଘୁବୀର॥**

ପ୍ରଥମେ ମାଆର ସ୍ତନରେ କ୍ଷୀର ଜାତ ହୁଏ, ପରେ ସନ୍ତାନ ଜନ୍ମ ହୁଏ। ଏହାର ପ୍ରମାଣ ହେଲା, ସନ୍ତାନ ଜନ୍ମ ପରେ ମାଆମାନେ ସ୍ତନରୁ ପୁରୁଣା କ୍ଷୀର ବାହାର କରି ଶିଶୁକୁ ନୂଆ କ୍ଷୀର ପିଆନ୍ତି। ଆମକୁ କେହି ବ୍ୟାଖ୍ୟାନ ଦେବା ପାଇଁ ଡାକିବା ପୂର୍ବରୁ

ଆମର ରହିବାର ବ୍ୟବସ୍ଥା କରିଥାନ୍ତି। ବ୍ୟାଖ୍ୟାନ ଦେବା ପୂର୍ବରୁ ମଣ୍ଡପ ତିଆରି ହୋଇଥାଏ। ବରଯାତ୍ରୀ ଆସିବା ପୂର୍ବରୁ ସେମାନଙ୍କ ରହିବାର ସମସ୍ତ ବ୍ୟବସ୍ଥା କରାଯାଇଥାଏ। କୌଣସି ଉତ୍ସବ ହେବା ପୂର୍ବରୁ ସବୁ ଆୟୋଜନ ହୋଇଥାଏ। ବୈଜ୍ଞାନିକମାନେ ମଧ୍ୟ କହନ୍ତି, ଯେଉଁଠାରେ ଅଧିକ ବୃକ୍ଷ ଥାଏ, ସେଠାରେ ଅଧିକ ବର୍ଷା ହୁଏ। ଯେଉଁଠାରେ ବୃକ୍ଷ ନ ଥାଏ, ସେଠାରେ କମ୍ ବର୍ଷା ହୁଏ। ସେହିପରି ଜନସଂଖ୍ୟା ଅଧିକ ହେଲେ ଖାଦ୍ୟଶସ୍ୟ ମଧ୍ୟ ଅଧିକ ହେବ। ଅନ୍ନର ଅଭାବ ରହିବ ନାହିଁ।

**ପ୍ରଶ୍ନ**—ଆଜିକାଲି ଖାଦ୍ୟଶସ୍ୟ ମହଙ୍ଗା ହେଉଛି କାହିଁକି?

**ଉତ୍ତର**—ଯେଉଁ ଦିନଠାରୁ ପରିବାର ନିୟନ୍ତ୍ରଣ ଆରମ୍ଭ ହେଲା, ସେବେଠାରୁ ଖାଦ୍ୟଶସ୍ୟ ମହଙ୍ଗା ହେଲା ଓ ଉତ୍ପାଦନ କମିଗଲା। ଜନସଂଖ୍ୟା କମ୍ ହେଲେ ଖାଦ୍ୟଶସ୍ୟ କାହିଁକି ଅଧିକ ଉତ୍ପାଦିତ ହେବ? ପରିବାର ନିୟନ୍ତ୍ରଣ ପ୍ରଥା ପ୍ରଚଳିତ ହେବାରୁ ଦେଶର ଏପରି ଦଶା ହୋଇଛି।

ଆଜିକାଲି ପ୍ରଚାର କରାଯାଉଛି—ମାଛ, ମାଂସ, ଅଣ୍ଡା ଖାଅ। ତା'ହେଲେ ବର୍ଷା ଓ ଫସଲ କାହିଁକି ହେବ? ମାଂସ ଖାଇଲେ ତୃଣଭୋଜୀ ପଶୁ ରହିବେ ନାହିଁ, ଫଳରେ ସେମାନଙ୍କ ପାଇଁ ଘାସ ଆବଶ୍ୟକ ହେବ ନାହିଁ। ମାଂସ ଭକ୍ଷଣ କଲେ ଅଧିକ ଖାଦ୍ୟଶସ୍ୟ ଦରକାର ହେବ ନାହିଁ। ତାହାହେଲେ ଘାସ ଓ ଶସ୍ୟ ନିରର୍ଥକ ଭାବରେ କାହିଁକି ଉତ୍ପାଦିତ ହେବ?

ଜନସଂଖ୍ୟା ତୁଳନାରେ ପଦାର୍ଥ କମ୍ ଥିଲେ ଦର ବଢ଼େ। ମନୁଷ୍ୟ ଯେତେବେଳେ ଆଳସ୍ୟପରାୟଣ ହୋଇଯାଇ କାର୍ଯ୍ୟ କରେ ନାହିଁ, ସେତେବେଳେ ପଦାର୍ଥ କମ୍ ଉତ୍ପାଦିତ ହୁଏ। ଆଜିକାଲି ଏହି ଦଶା ହୋଇଛି। ଲୋକେ କମ୍ କାର୍ଯ୍ୟ କରୁଛନ୍ତି ଓ ଅଧିକ ଖର୍ଚ୍ଚ କରୁଛନ୍ତି; ତେଣୁ ଦର ବଢୁଛି। ଅଳ୍ପ ପରିଶ୍ରମ ଯୋଗୁଁ କମ୍ ଖାଦ୍ୟପଦାର୍ଥ ଉତ୍ପାଦିତ ହେଉଛି। ଜନସଂଖ୍ୟା ଅଧିକ ହେବାରୁ ଦର ବଢୁଛି ବୋଲି କହିବା ଠିକ୍ ନୁହେଁ। ମନୁଷ୍ୟର ଆଳସ୍ୟ, ପ୍ରମାଦ ଅକର୍ମଣ୍ୟତା ଯୋଗୁଁ ଉତ୍ପାଦନ କମ୍ ଓ ଦର ଅଧିକ ହେଉଛି। ଏହା ସହିତ ଶାସନର ଅବ୍ୟବସ୍ଥା ମଧ୍ୟ ମୂଲ୍ୟବୃଦ୍ଧିର କାରଣ ହୋଇଥାଏ।

**ପ୍ରଶ୍ନ**—କାମଧନ୍ଦା ନ ମିଳିଲେ କ'ଣ କରାଯିବ?

**ଉତ୍ତର**—ଆଜିକାଲି ମନୁଷ୍ୟ ଯେଉଁ କ୍ଷେତ୍ରରେ କାର୍ଯ୍ୟ କରୁଛି, ସେଠାରେ ନିଜ କର୍ତ୍ତବ୍ୟକୁ ଠିକ୍‌ଭାବରେ ପାଳନ କରୁ ନାହିଁ। ଆଳସ୍ୟ ଓ ପ୍ରମାଦରେ ନିଜ ସମୟ ନଷ୍ଟ କରୁଛି। ପ୍ରକୃତରେ କାର୍ଯ୍ୟ ବହୁତ ଅଛି; ନିଷ୍ଠାର ସହିତ କରିବା ଲୋକ କମ୍

ଅଛନ୍ତି । ନିଷ୍ଠାବାନ୍ ଲୋକକୁ କାର୍ଯ୍ୟ ଯେ ମିଳିବ ନାହିଁ, ଏହା ଅସମ୍ଭବ । ଆଳସ୍ୟ, ପ୍ରମାଦ, ଅନିୟମିତତା ଆଦି ଦୋଷରୁ ମନୁଷ୍ୟକୁ କାମଧନ୍ଦା ମିଳୁ ନାହିଁ ।

**ପ୍ରଶ୍ନ**—ଆଜିକାଲିର ମହଙ୍ଗା ଯୁଗରେ ଅଧିକ ସନ୍ତାନ ହେଲେ ସେମାନଙ୍କର ପାଳନପୋଷଣ କିପରି ହେବ?

**ଉତ୍ତର**—ଜାଣିରଖ ଯେ ଆବଶ୍ୟକତା ହେଉଛି ଆବିଷ୍କାରର ଜନନୀ । ତେଣୁ ସନ୍ତାନ ଅଧିକ ହେଲେ ଓ ଜନସଂଖ୍ୟା ବଢ଼ିଲେ ସେମାନଙ୍କର ପାଳନପୋଷଣର ବ୍ୟବସ୍ଥା ଆପେ ଆପେ ହେବ । ପୂର୍ବକାଳରେ ମୁଁ ଦେଖିଛି ଯେ ଯେଉଁ ବର୍ଷ ପଙ୍ଗପାଳ ଅଧିକ ଆସନ୍ତି, ସେ ବର୍ଷ ଭଲ ଫସଲ ହୁଏ ଓ ଦୁର୍ଭିକ୍ଷ ପଡ଼େ ନାହିଁ । ପଙ୍ଗପାଳ ଆସିଲେ ଭଗବାନଙ୍କ ବିଧାନ କ୍ରମେ ଅଧିକ ବର୍ଷା ହୁଏ । ଏହାର କାରଣ ଜୀବଜନ୍ତୁ ଅଧିକ ହେଲେ ସେମାନଙ୍କ ପାଇଁ ଖାଦ୍ୟ ଅଧିକ ଆବଶ୍ୟକ । ପରମାତ୍ମାଙ୍କର ଏହି ବ୍ୟବସ୍ଥା ପୂର୍ବେ ଥିଲା; ଆଜି ମଧ୍ୟ ଅଛି । ଆପଣମାନେ ପରିବାର ନିୟନ୍ତ୍ରଣ କରୁଛନ୍ତି ଓ ସବୁ ବ୍ୟବସ୍ଥାର ଭାର ନିଜ ଉପରକୁ ନେଉଛନ୍ତି, ତେଣୁ ଅସୁବିଧାରେ ପଡୁଛନ୍ତି । ଆପଣ କେବଳ ନିଜ ନିଜ କର୍ତ୍ତବ୍ୟରେ ତତ୍ପର ରହନ୍ତୁ । ଦେଖିବେ, ଆପଣଙ୍କର ଓ ଆପଣଙ୍କ ପରିବାରର ପାଳନ-ପୋଷଣର ବ୍ୟବସ୍ଥା ପରମାତ୍ମାଙ୍କ ପକ୍ଷରୁ ନିଶ୍ଚୟ ହେବ ।

ପୂର୍ବେ ରାଜା-ମହାରାଜାମାନେ ବହୁସଂଖ୍ୟାରେ ସନ୍ତାନ ଜାତ କରୁଥିଲେ ଏବଂ ସେମାନଙ୍କର ପାଳନ-ପୋଷଣ ମଧ୍ୟ ହେଉଥିଲା । ରାଜା ସଗରଙ୍କର ଷାଠିଏ ହଜାର ପୁତ୍ର ଥିଲେ । ରାଜା ଅଗ୍ରସେନଙ୍କର ବହୁପୁତ୍ର ଥିଲେ । ସେମାନଙ୍କ ବଂଶଜ ଆଜିକାଲି ଅଗ୍ରୱାଲ ନାମରେ ଖ୍ୟାତ । ଧୃତରାଷ୍ଟ୍ରଙ୍କର ଶହେ ପୁତ୍ର ଥିଲେ । ଏପରି ଜଣେ ଜଣେ ଲୋକଙ୍କର ସନ୍ତାନମାନେ ଏକାଠି ବସତି ସ୍ଥାପନ କରିବାରୁ ଗୋଟିଏ ଗୋଟିଏ ଗ୍ରାମ ସୃଷ୍ଟି ହୋଇଯାଉଥିଲା ।

ଏହା ପ୍ରତ୍ୟକ୍ଷ ଦେଖାଯାଏ ଯେ ନିଜର ଜୀବନନିର୍ବାହ ପାଇଁ କୌଣସି ଯତ୍ନ କରୁ ନ ଥିବା ସାଧନନିଷ୍ଠ ଅନାସକ୍ତ ସନ୍ଥଙ୍କର ଖାଦ୍ୟପେୟର ବ୍ୟବସ୍ଥା ଜନସାଧାରଣ ଆଗ୍ରହପୂର୍ବକ କରନ୍ତି । ଚେଷ୍ଟା କରୁଥିବା ସାଧାରଣ ବ୍ୟକ୍ତିଠାରୁ ଉକ୍ତ ସନ୍ଥଙ୍କ ନିର୍ବାହର ବ୍ୟବସ୍ଥା ଉତ୍ତମରୂପେ ସଂପାଦିତ ହୁଏ ।

ମୁସଲମାନ ଭାଇମାନେ ଗ୍ୱରି ଗ୍ୱରିଟା ବାହା ହୁଅନ୍ତି । ମୁଁ ଶୁଣିଛି ଜଣେ ଭାଇଙ୍କର ଦେଢ଼ଶହ ସନ୍ତାନ ଥିଲେ । ଆଉ ଜଣଙ୍କର ଉଣେଇଶଟି ସନ୍ତାନ ମଧ୍ୟରୁ ଦୁଇଜଣ ମରିଗଲେ ଓ ସତର ଜଣ ବଞ୍ଚିଛନ୍ତି । ଯେଉଁ ମୁସଲମାନ ଭାଇମାନେ ପରିବାର ନିୟନ୍ତ୍ରଣ କରୁ ନାହାନ୍ତି, ସେମାନଙ୍କ ସନ୍ତାନମାନଙ୍କର ତ ପୁଣି

ପାଳନପୋଷଣ ହେଉଛି! କେବଳ ହିନ୍ଦୁମାନେ ହିଁ ଖାଉଛନ୍ତି ପିନ୍ଧୁଛନ୍ତି କି? ମୁସଲମାନମାନେ କହନ୍ତି—ପରମାତ୍ମା ସନ୍ତାନ ପ୍ରଦାନ କରନ୍ତି। ଜନ୍ମନିୟନ୍ତ୍ରଣ ଦ୍ୱାରା ତାକୁ ବନ୍ଦ କରିବାର ଅଧିକାର ମନୁଷ୍ୟର ନାହିଁ। ଏହା କରିବା ଅନଧିକାର ଚେଷ୍ଟା। ପ୍ରକୃତରେ ପରିବାର ନିୟନ୍ତ୍ରଣ କରୁଥିବା ଜାତିର ଜନସଂଖ୍ୟା ହ୍ରାସ ପାଏ। ଆମ ଦେଶରେ ମୁସଲମାନଙ୍କ ସଂଖ୍ୟା ବୃଦ୍ଧି ପାଉଛି। ସେମାନଙ୍କର ବିଗ୍ୱର ଯେ ସେମାନଙ୍କ ସଂଖ୍ୟା ବୃଦ୍ଧି ପାଇଲେ ସେମାନେ ରାଜ୍ୟଶାସନ କରିବେ। ଭୋଟ ଅଧିକ ଯାହାର, ରାଜ୍ୟଶାସନ ତାହାର। ମାତ୍ର ହିନ୍ଦୁମାନେ ସାମାନ୍ୟ ସୁଖସୁବିଧା ଲାଳସାରେ ଗର୍ଭନିରୋଧ, ଗର୍ଭପାତ ଆଦି ମହାପାପ କରୁଛନ୍ତି। ଇହଲୋକରେ ସେମାନଙ୍କ ସଂଖ୍ୟା କମୁଛି ଓ ପରଲୋକରେ ମହାପାପରେ ଭାଗୀ ହେଉଛନ୍ତି। ଏ ଦିଗକୁ ସେମାନଙ୍କର ଆଦୌ ଦୃଷ୍ଟି ନାହିଁ। ଖାଇବା, ପିଇବା ଓ ସୁଖ ଭୋଗିବାରେ ପଶୁମାନେ ଯେଉଁଭଳି ବ୍ୟସ୍ତ ଥାଆନ୍ତି, ସେଭଳି କଲେ ପୁଣି ମନୁଷ୍ୟର ମନୁଷ୍ୟତା କ'ଣ ରହିଲା?

ହିନ୍ଦୁଧର୍ମରେ ମନୁଷ୍ୟଜନ୍ମକୁ ଦୁର୍ଲଭ କୁହାଯାଇଛି ଓ ଆତ୍ମୋଦ୍ଧାରକୁ ସରଳ କୁହାଯାଇଛି। ତେଣୁ କୌଣସି ଜୀବ ମନୁଷ୍ୟଜନ୍ମ ପାଇ ହିନ୍ଦୁଧର୍ମକୁ ଆସିବାରେ ବାଧାସୃଷ୍ଟି କରିବା ଉଚିତ ନୁହେଁ। ସେପରି କଲେ ସେହି ଜୀବ ବିଧର୍ମୀଙ୍କ ଘରେ ଜନ୍ମ ନେଇ ଆପଣଙ୍କୁ ଓ ଆପଣଙ୍କ ସଂସ୍କୃତିକୁ ବିନାଶ କରିବ। ଜୀବର କେବଳ ଜଣକ ସହିତ ଋଣାନୁବନ୍ଧ ନ ଥାଏ, ଅନେକ ବ୍ୟକ୍ତିଙ୍କ ସହିତ ଥାଏ।

କୌରବ ଓ ପାଣ୍ଡବଙ୍କର ନଅ ନଅ ଅକ୍ଷୌହିଣୀ ସେନା ଥିଲେ। ପରନ୍ତୁ ଏକ ଅକ୍ଷୌହିଣୀ ନାରାୟଣୀ ସେନା ଓ ଏକ ଅକ୍ଷୌହିଣୀ ଶଲ୍ୟଙ୍କ ସେନା କୌରବଙ୍କ ପକ୍ଷକୁ ଗ୍ୱଲିଯିବାରୁ ପାଣ୍ଡବଙ୍କ ଅପେକ୍ଷା କୌରବଙ୍କ ସେନା ଗ୍ୱରି ଅକ୍ଷୌହିଣୀ ବଢ଼ିଗଲା। କୌରବଙ୍କର ଏଗାର ଅକ୍ଷୌହିଣୀ ଓ ପାଣ୍ଡବଙ୍କର ସାତ ଅକ୍ଷୌହିଣୀ ରହିଲେ। ହିନ୍ଦୁମାନେ ଗର୍ଭନିରୋଧ, ଅପରେସନ ଆଦି ଦ୍ୱାରା ସନ୍ତତି-ନିରୋଧ କଲେ ଯେଉଁ ସନ୍ତାନମାନେ ଏହି ଧର୍ମରେ ଜାତ ହୋଇଥାଆନ୍ତେ, ସେମାନେ ବିଧର୍ମୀଙ୍କ ଘରେ ଜନ୍ମିବେ। ଏପର୍ଯ୍ୟନ୍ତ ପ୍ରାୟ ବାରକୋଟି ଶିଶୁଙ୍କୁ ଆମ ଧର୍ମରେ ଜନ୍ମିବାରେ ବାଧାଦିଆ ଯାଇଛି*। ତେଣୁ ବାରକୋଟି ଶିଶୁ ଗୋ-ଘାତୀ ବିଧର୍ମୀଙ୍କ ଘରେ ଜାତ ହେବେ।

---

* ଯେଉଁମାନେ ସନ୍ତତିନିରୋଧ କରିଛନ୍ତି, ସେମାନଙ୍କର ପରବର୍ତ୍ତୀ ଗର୍ଭର ସନ୍ତାନମାନେ ମଧ୍ୟ ସ୍ୱତଃ ନିରୁଦ୍ଧ ହୋଇଛନ୍ତି। ପ୍ରତ୍ୟେକ ବ୍ୟକ୍ତିର ଦୁଇ ତିନୋଟି ଲେଖାଏଁ ସନ୍ତାନ ନିରୁଦ୍ଧ ହୋଇଥିବା ଧରାଗଲେ ଏହି ସଂଖ୍ୟା ଚବିଶରୁ ଛତିଶ କୋଟି ପର୍ଯ୍ୟନ୍ତ ହେବ। ଅର୍ଥାତ୍ ଏତେ ସଂଖ୍ୟକ ହିନ୍ଦୁ କମ୍ ହେବେ।

ସେମାନଙ୍କ ସଂଖ୍ୟା ହିନ୍ଦୁଙ୍କ ଠାରୁ ଚବିଶ କୋଟି ବୃଦ୍ଧି ପାଇବ। ବିଧର୍ମୀଙ୍କ ସଂଖ୍ୟା ବଢ଼ିଲେ, ସେମାନେ ହିନ୍ଦୁମାନଙ୍କୁ ବିନାଶ କରିବେ। ତେଣୁ ହିନ୍ଦୁମାନେ ନିଜ ସନ୍ତାନ-ପରମ୍ପରା ନଷ୍ଟ କରିବା ଉଚିତ ନୁହେଁ। ଏହା କଲେ ଗୋ-ଘାତକଙ୍କ ସଂଖ୍ୟା ବୃଦ୍ଧି ହେବାରେ ସାହାଯ୍ୟ କରି ହିନ୍ଦୁମାନେ ଗୋହତ୍ୟା ପାପରେ ଭାଗୀ ହେବେ।

**ପ୍ରଶ୍ନ**—ଅଳ୍ପ ସନ୍ତାନ ହେଲେ ସେମାନଙ୍କ ପାଳନପୋଷଣ ଉତ୍ତମ ହେବ। ପରିବାର ସୁଖୀ ରହିବ, ତେଣୁ ପରିବାର ନିୟନ୍ତ୍ରଣ କରିବାରେ ହାନି କ'ଣ?

**ଉତ୍ତର**—ସନ୍ତାନ ଅଳ୍ପ ହେଲେ ପରିବାର ଯେ ସୁଖୀ ହେବ, ଏହା ଭ୍ରମ ଧାରଣା। ଯେଉଁମାନଙ୍କର ସନ୍ତାନ ନାହିଁ, ସେମାନେ ମଧ୍ୟ ଦୁଃଖୀ। ଯେଉଁମାନଙ୍କ ସନ୍ତାନ କମ୍, ସେମାନେ ମଧ୍ୟ ଦୁଃଖୀ। ଯେଉଁମାନଙ୍କ ସନ୍ତାନ ଅଧିକ, ସେମାନେ ମଧ୍ୟ ଦୁଃଖୀ। ସନ୍ତାନ ନ ଥିବା ଲୋକ, ଅଳ୍ପ ସନ୍ତାନ ଥିବା ଲୋକ ଓ ଅଧିକ ସନ୍ତାନ ଥିବା ଲୋକ—ଏପରି ବହୁ ପ୍ରକାର ଲୋକଙ୍କ ସହିତ ମୁଁ କଥାବାର୍ତ୍ତା କରିଛି। ସନ୍ତାନ ବେଶୀ ବା କମ୍ ହେବା ସୁଖ-ଦୁଃଖର କାରଣ ନୁହେଁ। ସଂସାରରେ ଅଳ୍ପ ସନ୍ତାନ ଯୋଗୁଁ ସୁଖୀ ହୋଇଥିବା ଜଣେ ଲୋକର ନାମ ମୋତେ କହି ପାରିବେ କି? ସଂସାରରେ କ'ଣ, ସମଗ୍ର ସୃଷ୍ଟିରେ ମଧ୍ୟ ଏପରି କେହି ନାହିଁ। ଦୁଃଖର କାରଣ ହେଉଛି ଭୋଗପରାୟଣତା— ***'ଯେ ହି ସଂସ୍ପର୍ଶଜା ଭୋଗା ଦୁଃଖଯୋନୟ ଏବ ତେ'*** (ଗୀତା ୫।୨୨)। ଭୋଗୀ ମନୁଷ୍ୟ କେବେହେଲେ ସୁଖୀ ହେବା ସମ୍ଭବ ନୁହେଁ। ତାହାର ସନ୍ତାନ ଆଦୌ ନ ଥାଆନ୍ତୁ, ଅଳ୍ପ ଥାଆନ୍ତୁ ବା ଅଧିକ ଥାଆନ୍ତୁ, ଭୋଗାସକ୍ତି ଯୋଗୁଁ ସେ ସବୁବେଳେ ଦୁଃଖୀ ହୋଇ ରହିବ।

ବିବାହ ପରେ ପରେ ସ୍ତ୍ରୀ ଓ ପୁରୁଷ ପରସ୍ପର ପ୍ରତି ବିଶେଷ ଆକୃଷ୍ଟ ଥାଆନ୍ତି। ତେଣୁ ପ୍ରଥମ ସନ୍ତାନ ଭୋଗେଚ୍ଛାରୁ ଜାତ ହୁଅନ୍ତି। ସେମାନେ ପ୍ରାୟଶଃ ବେଶୀ ଭଲ ନ ହୋଇ ଭୋଗୀ ହୁଅନ୍ତି। ତେଣୁ ସନ୍ତାନ କମ୍ ହେଲେ ଭୋଗୀ ସନ୍ତାନ ଜନ୍ମ ହେବେ। ସେମାନଙ୍କ ଦ୍ୱାରା ସମାଜର ପତନ ଘଟିବ। ଆଜି ସମାଜ ମଧ୍ୟରେ ଧର୍ମ ଓ ଅଧ୍ୟାତ୍ମର ଯାହା କିଛି ପ୍ରଚାର ହୋଇଛି, ଯାହା କିଛି ସମାଜସଂସ୍କାର ହୋଇଛି, ତାହା ଉତ୍ତମ ବ୍ୟକ୍ତିମାନେ କରିଛନ୍ତି। ଭୋଗୀ, କୃପଣ ଓ ଚୋରମାନେ ସମାଜସଂସ୍କାର କରିପାରନ୍ତି ନାହିଁ।

**ପ୍ରଶ୍ନ**—ଭଗବାନ ରାମ ଓ ଭରତ ପ୍ରଭୃତି ପରିବାର ନିୟନ୍ତ୍ରଣ କରିଥିଲେ। ***'ଦୁଇ ସୁତ ସୁଂଦର ସୀତାଁ ଜାଏ'*** ଏବଂ ***'ଦୁଇ ଦୁଇ ସୁତ ସବ ଭ୍ରାତନ୍ହ କେରେ'*** (ମାନସ, ଉତ୍ତର. ୨୫।୩ ଓ ୪)। ତେଣୁ ଏବେ ମଧ୍ୟ ଦୁଇଟି ସନ୍ତାନ ଜନ୍ମ କରିବାରେ ହାନି କ'ଣ?

**ଉତ୍ତର**—କୌଣସି ରାମାୟଣରେ ଲେଖା ନାହିଁ ଯେ ଶ୍ରୀରାମ ସନ୍ତତିନିରୋଧ କରିଥିଲେ ଅଥବା ସୀତା ଅପ୍ରେସନ କରାଇଥିଲେ। ଏସବୁ ପ୍ରଥା ଆମ ଆଖି ଆଗରେ ଆଧୁନିକ ଯୁଗରେ ଆରମ୍ଭ ହୋଇଛି। ଏହା ବିଦେଶୀ ବିଚାର, ଆମ ଦେଶର ବିଚାର ନୁହେଁ। ରାମ, ଭରତ ପ୍ରଭୃତି ତ ପୁଣି ଚାରି ଭାଇ ଥିଲେ! ଭଗବାନ କୃଷ୍ଣଙ୍କ ଷୋହଳ ହଜାର ଏକ ଶହ ଆଠ ରାଣୀଙ୍କ ମଧ୍ୟରୁ ପ୍ରତ୍ୟେକଙ୍କର ଦଶ ଦଶ ପୁତ୍ର ଓ ଏକ ଏକ କନ୍ୟା ହୋଇଥିଲେ। ସ୍ୱାଭାବିକଭାବେ କାହାର ସନ୍ତାନ ଅଧିକ ହୁଅନ୍ତି ତ କାହାର କମ୍ ହୁଅନ୍ତି।

**ପ୍ରଶ୍ନ**—ସନ୍ତାନ ଅଧିକ ସଂଖ୍ୟାରେ ହେଲେ ସେମାନଙ୍କ ଲାଳନ-ପାଳନରେ ସବୁ ସମୟ ନଷ୍ଟ ହେବ, ତାହାହେଲେ ଭଗବାନଙ୍କ ଭଜନକୀର୍ତ୍ତନ କିପରି କରାଯିବ?

**ଉତ୍ତର**—ଅଧିକ ସନ୍ତାନ ଜାତ କରିବା ପାଇଁ ମୁଁ କହୁ ନାହିଁ। ମୋର ଉଦ୍ଦେଶ୍ୟ ହେଉଛି, କ୍ଷଣିକ ସୁଖ ପାଇଁ କୃତ୍ରିମ ଉପାୟରେ ସନ୍ତତିନିରୋଧ କରି ଦେହ, ବଳ, ଉତ୍ସାହ ଆଦି ନଷ୍ଟ କରନ୍ତୁ ନାହିଁ। ଜମି ଚାଷ କରି ମଞ୍ଜି ନ ବୁଣିବା ବୁଦ୍ଧିମାନ୍‌ର କାର୍ଯ୍ୟ ନୁହେଁ। **'ହତଂ ମୈଥୁନମପ୍ରଜମ୍'**—ସନ୍ତାନ ଜାତ ନ ହେଲେ ସ୍ତ୍ରୀସଙ୍ଗ କରିବା ବ୍ୟର୍ଥ ଅଟେ। ମୋର କହିବାର ତାତ୍ପର୍ଯ୍ୟ ହେଉଛି ଯେ ଆପଣମାନେ ଇନ୍ଦ୍ରିୟର ଦାସ ନ ହୁଅନ୍ତୁ, ପରାଧୀନ ନ ହୋଇ ସ୍ୱତନ୍ତ୍ର ହୁଅନ୍ତୁ।

**ପ୍ରଶ୍ନ**—ଆମର ଅଧିକ ସନ୍ତାନ ଲୋଡ଼ା ନାହିଁ, ଏଣେ ସଂଯତ ରହି ହେଉ ନାହିଁ, ସେହି ଅବସ୍ଥାରେ କ'ଣ କରାଯିବ?

**ଉତ୍ତର**—ଆପଣ ସଂଯମୀ ହେବାକୁ ଚାହିଁଲେ ନିଶ୍ଚୟ ହୋଇ ପାରିବେ। ବହୁବର୍ଷ ପୂର୍ବେ ''ବ୍ରହ୍ମଚର୍ଯ୍ୟ ହିଁ ଜୀବନ'' ନାମକ ପୁସ୍ତକ ପଢ଼ିଥିଲି। ଶିବାନନ୍ଦ ନାମକ ଜଣେ ବ୍ୟକ୍ତି ତାହାର ଲେଖକ ଥିଲେ। ସେ ଉକ୍ତ ପୁସ୍ତକରେ ଲେଖିଥିଲେ—''ମୁଁ ବିବାହିତ। ମୁଁ ଓ ମୋର ପତ୍ନୀ ସଦ୍‌ବିଚାର କରି ବ୍ରହ୍ମଚର୍ଯ୍ୟ ପାଳନ କଲୁ। ତଦ୍ୱାରା ମୋର ବହୁତ ଉପକାର ହେଲା। ସମସ୍ତଙ୍କର ଉପକାର ହେଉ—ଏହି ଭାବନାରେ ମୁଁ ଏ ପୁସ୍ତକଟି ଲେଖିଅଛି।'' ଥରେ ଜଣେ ମାଆ ମୋତେ ଗୋଟିଏ ଘଟଣା କହିଥିଲେ। ତାଙ୍କ ଘର ପାଖରେ ଜୈନ ସମ୍ପ୍ରଦାୟର ସ୍ୱାମୀ-ସ୍ତ୍ରୀ ଦୁହେଁ ରହୁଥିଲେ। ପ୍ରତି ରାତ୍ରିରେ ସେ ଘରୁ କଥାବାର୍ତ୍ତାର ଶବ୍ଦ ଶୁଭୁଥିଲା। ସେ ପଚାରିଲେ—ରାତ୍ରିରେ ଆପଣମାନେ ଶୋଉ ନାହାନ୍ତି କି? ତାଙ୍କଠାରୁ ସେ ଗୋଟିଏ ଉପାଦେୟ ଉତ୍ତର ପାଇଲେ। ବିବାହ ପୂର୍ବରୁ ସେମାନେ ପ୍ରତିଜ୍ଞା କରିଥିଲେ ଯେ ଜଣେ କୃଷ୍ଣପକ୍ଷରେ ଓ ଅନ୍ୟଜଣେ ଶୁକ୍ଳପକ୍ଷରେ ବ୍ରହ୍ମଚର୍ଯ୍ୟ ପାଳନ କରିବେ। ମାସରେ ତୃତୀୟ ପକ୍ଷ ତ ନାହିଁ, ତେଣୁ ଗୋଟିଏ କୋଠରୀରେ ରହି ସୁଦ୍ଧା ରାତ୍ରିରେ

ସେମାନେ ପରସ୍ପର ଧର୍ମଚର୍ଚ୍ଚା କରନ୍ତି। ଆପଣ ଉତ୍ସାହ ଓ ସଙ୍କଳ୍ପ ରଖିଲେ ସଂଯମ ଦୁଷ୍କର ହେବ ନାହିଁ। ସଙ୍କଳ୍ପ ଦ୍ୱାରା ଅସମ୍ଭବ ମଧ୍ୟ ସମ୍ଭବ ହୋଇପାରେ।

ତେଣୁ ଉତ୍ସାହୀ ହୁଅନ୍ତୁ। ଭଗବାନଙ୍କ ଠାରେ ଭରସା ରଖନ୍ତୁ ଓ ତାଙ୍କୁ ପ୍ରାର୍ଥନା କରନ୍ତୁ—''ହେ ପ୍ରଭୁ! ସଂଯମୀ ହେବା ପାଇଁ ଆମେ ସଂକଳ୍ପ କରୁଅଛୁ, ସେଥିପାଇଁ ଆମକୁ ଶକ୍ତି ଦିଅ।'' ଏଭଳି ଆପଣ ତତ୍ପର ରହିଲେ ଓ ଭଗବାନଙ୍କ ଠାରେ ଭରସା ରଖିଲେ, ଆପଣଙ୍କୁ ଅଲୌକିକ ଚମତ୍କାରିତା ଦେଖିବାକୁ ମିଳିବ। ପରୀକ୍ଷା କରି ଦେଖନ୍ତୁ।

ପୂର୍ବକାଳରେ ଗର୍ଭନିରୋଧ ଅସ୍ତ୍ରୋପଚାର ନ ଥିଲା। ଲୋକେ ସଂଯତ ରହୁଥିଲେ। ଏବେ ମଧ୍ୟ ଆମେ ସଂଯତ ରହି ପାରିବା। ଆମେ ପ୍ରଥମରୁ ଅତ୍ୟଧିକ ଅସଂଯମୀ ଓ ଆସୁରୀ ସ୍ୱଭାବର ବଶବର୍ତ୍ତୀ ହୋଇଯିବାରୁ ସଂଯମ ଓ ଦୈବୀ ଗୁଣକୁ ଲାଭ କରିବା ଆମ ପକ୍ଷରେ କଠିନ ବୋଧ ହେଉଛି।

ଜଣେ ସତ୍ୟବାଦୀ ବ୍ୟକ୍ତିକୁ ମିଛ କହିବା ପାଇଁ ହଜାରେ ଟଙ୍କା ଦେଲେ ମଧ୍ୟ ସେ ମିଛ କହିପାରେ ନାହିଁ। ପରନ୍ତୁ ସତ୍ୟ-ମିଥ୍ୟା ପ୍ରତି ଦୃଷ୍ଟି ଦେଉ ନ ଥିବା ବ୍ୟକ୍ତିକୁ ସତ କହିବା ପାଇଁ ପାଞ୍ଚଟଙ୍କା ଦେଲେ ସେ ସତ କହିଦେବ। ଜଣେ ଶାକାହାରୀକୁ ମାଂସ ଖାଇବା ପାଇଁ ହଜାରେ ଟଙ୍କା ଦେଲେ ସୁଦ୍ଧା, ସେ ମରିଯିବ ପଛେ ମାଂସ ଖାଇବ ନାହିଁ। ଜଣେ ମାଂସାହାରୀକୁ ମାଂସ ନ ଖାଇବା ପାଇଁ ଦିନକୁ ମାତ୍ର ଟଙ୍କାଏ ଲେଖାଏଁ ଦେଲେ ମଧ୍ୟ ସେ ମାସେ ପର୍ଯ୍ୟନ୍ତ ମାଂସ ନ ଖାଇ ରହିଯିବ। ଯେ ମଦ୍ୟପାନ କରେ ନାହିଁ, ତାକୁ ଭୟ, ଲୋଭ ଦେଖାଇ ମଦ୍ୟପାନ କରିବାକୁ କହିଲେ ସୁଦ୍ଧା ସେ ତାହା କରିବ ନାହିଁ। ପରନ୍ତୁ ଯେ ମଦ୍ୟପାନ କରେ, ସେ ସନ୍ଥ-ମହାତ୍ମାମାନଙ୍କ ସଂସ୍ପର୍ଶରେ ଆସି ମଦ୍ୟପାନ ଛାଡ଼ିଦିଏ। ଏଥିରୁ ଆମେ କ'ଣ ବୁଝିଲୁ? ପ୍ରକୃତରେ ମିଛ କହିବା, ମାଂସ-ମଦ୍ୟ ଆଦି ସେବନ କରିବା କଠିନ କାର୍ଯ୍ୟ। କିନ୍ତୁ ସତ୍ୟ କହିବା, ମାଂସ-ମଦ୍ୟ ଆଦି ତ୍ୟାଗ କରିବା ସହଜ। ଠିକ୍ ଏହିପରି ସଂଯମ ତ୍ୟାଗ କରିବା କଠିନ, ସଂଯମ ରକ୍ଷା କରିବା କଠିନ ନୁହେଁ। ଏହା ଅନୁଭବସିଦ୍ଧ ଅଟେ।

ଆଉ ଗୋଟିଏ ବିଷୟ ବିଚାରଣୀୟ। ତା'ହେଉଛି ସଂଯମ ସ୍ୱତଃସିଦ୍ଧ ଅଟେ ଓ ଅସଂଯମ କୃତ୍ରିମ ଅଟେ। ତେବେ ସାଧାରଣ ଲୋକଙ୍କ ପାଇଁ ସଂଯମ କାହିଁକି ଦୁଷ୍କର ବୋଧ ହୁଏ, ସେ ବିଷୟରେ ଟିକେ ଚିନ୍ତା କରନ୍ତୁ। ଯେଉଁମାନେ ସଂଯମ ତ୍ୟାଗ କରି ଜୀବନକୁ ଅସଂଯମୀ କରିଛନ୍ତି, ସେମାନଙ୍କ ପାଇଁ ପୁନଃ ସଂଯମ ରକ୍ଷା କରିବା କଠିନ ହୋଇଯାଏ। ପ୍ରଥମରୁ ସଂଯମୀ ଜୀବନଯାପନ କଲେ ଦୁର୍ଗୁଣ ଓ ଦୁର୍ବ୍ୟସନ ତ୍ୟାଗ କରିଥିବାରୁ ମନୁଷ୍ୟ ମନରେ ବୀରତ୍ୱ, ଉତ୍ସାହ ଓ ଶାନ୍ତି

ବିରାଜମାନ କରେ । ସଂଯମରୁ ଯେତିକି ପ୍ରସନ୍ନତା, ନୀରୋଗତା, ବଳ, ଧୈର୍ଯ୍ୟ ଓ ଉତ୍ସାହ ମିଳେ, ଅସଂଯମରୁ ତାହା ମିଳେ ନାହିଁ । କିଛି ଦିନ ଉତ୍ତମ ସଙ୍ଗ ମଧ୍ୟରେ ରହି ସଂଯମିତ ଜୀବନଯାପନ କଲେ ଏହାର ଉପକାରିତା ଅନୁଭୂତ ହେବ । ସଂଯମ ଯୋଗୁଁ ପ୍ରାରବ୍ଧଜନିତ ରୋଗ କମ୍ ହୁଏ । ସଂଯମୀ ପୁରୁଷଙ୍କୁ ରୋଗ ଖୁବ୍ କମ୍ ହୁଏ । ସଂଯମୀ ବ୍ୟକ୍ତି ନିଶ୍ଚିନ୍ତ ହୋଇଥାଏ । ଅସଂଯମୀର ଚିନ୍ତା ଓ ଭୟ ଲାଗି ରହିଥାଏ । ଅସଂଯମୀ ରାବଣ ସୀତାହରଣ ପାଇଁ ଯିବାବେଳେ ଭୟରେ ଏଣେତେଣେ ଗ୍ଭହୁଁଥିଲା— ***'ସୋ ଦସସୀସ ସ୍ୱାନ କୀ ନାଈଁ । ଇତ ଉତ ଚିତଇ ଚଲା ଭଡ଼ିହାଈଁ ।'*** (ମାନସ, ଅରଣ୍ୟ. ୨୮ । ୫) । ପରନ୍ତୁ ରାକ୍ଷସଙ୍କ ନଗରୀରେ ଓ ରାକ୍ଷସୀଙ୍କ ମେଳରେ ବସି ସୁଦ୍ଧା ସୀତା ନିର୍ଭୟ ଥିଲେ । ଏକାକିନୀ ଓ ନାରୀ ହୋଇ ସୁଦ୍ଧା ତାଙ୍କର ତିଳେମାତ୍ର ଭୟ ନ ଥିଲା । ଏପରି କି ରାବଣକୁ ସେ ନିର୍ଲଜ୍ଜ ଓ ଅଧମ କହି ଗାଳି ଦେଇଥିଲେ— ***'ସଠ ସୂନେଁ ହରି ଆନେହି ମୋହୀ । ଅଧମ ନିଲଜ୍ଜ ଲାଜ ନହିଁ ତୋହୀ ॥'*** (ମାନସ, ସୁନ୍ଦର. ୯ । ୫)

ଆମ ଶାସ୍ତ୍ରରେ ବ୍ରହ୍ମଚର୍ଯ୍ୟର ଯଥେଷ୍ଟ ମହିମା ବର୍ଣ୍ଣନା କରାଯାଇଛି । ବିଦେଶୀମାନେ ମଧ୍ୟ ଏହି ବିଗ୍ଭରକୁ ଆଦର କରନ୍ତି । ବିଦେଶର ଜଣେ ଭଦ୍ରବ୍ୟକ୍ତି କହିଛନ୍ତି—ସମଗ୍ର ଜୀବନରେ ପୁରୁଷ ଥରେ ମାତ୍ର ସ୍ତ୍ରୀସଙ୍ଗ କରିବ । ତା'ସମ୍ଭବ ନ ହେଲେ ବର୍ଷରେ ଥରେ ସ୍ତ୍ରୀସଙ୍ଗ କରିବ । ତା ମଧ୍ୟ ସମ୍ଭବ ନ ହେଲେ ସ୍ତ୍ରୀର ଋତୁକାଳରେ ମାସରେ ଥରେ ସଙ୍ଗ କରିବ । ଯଦି ଏହା ମଧ୍ୟ ସମ୍ଭବ ନ ହୁଏ, ତେବେ ଶବ ଆଚ୍ଛାଦନ ପାଇଁ ଲୁଗା କିଣି ରଖିବ ଅର୍ଥାତ୍ ମୃତ୍ୟୁ ପାଇଁ ପ୍ରସ୍ତୁତ ହୋଇ ରହିବ । ବାରଂବାର ବ୍ରହ୍ମଚର୍ଯ୍ୟ ନାଶ ଦ୍ୱାରା ଆୟୁ ଶୀଘ୍ର ଶୀଘ୍ର ନଷ୍ଟ ହୁଏ । ଯଦିବା ଅଳ୍ପାୟୁରେ ମରିବାର ଅନେକ କାରଣ ଅଛି, ତେବେ ବୀର୍ଯ୍ୟ-ନାଶ ଏହାର ମୁଖ୍ୟ କାରଣ । ତେଣୁ ସୁସ୍ଥ, ନୀରୋଗ ଓ ଦୀର୍ଘାୟୁ ହେବା ପାଇଁ ବ୍ରହ୍ମଚର୍ଯ୍ୟ ପାଳନ ଏକାନ୍ତ ଆବଶ୍ୟକ । ସିଂହ ସମଗ୍ର ଜୀବନକାଳରେ ଥରେମାତ୍ର ସିଂହୀର ସହବାସ କରେ । ତେଣୁ ବୀର୍ଯ୍ୟରକ୍ଷା ବଳରୁ ସେ ତା'ଠାରୁ ବହୁ ବଡ଼ ହାତୀକୁ ମଧ୍ୟ ମାରିପାରେ । ଯେଉଁ ବ୍ୟକ୍ତି ବାରଂବାର ସ୍ତ୍ରୀସଙ୍ଗ କରେ, ତାହାର ଓଜବଳ କ୍ଷୟ ହୁଏ ଓ ସେ ସମ୍ପୂର୍ଣ୍ଣ ଦୁର୍ବଳ ହୋଇଯାଏ ।

ବ୍ରହ୍ମଚର୍ଯ୍ୟ ପାଳନ କଲେ ବଡ଼ ବଡ଼ ରୋଗ ଆକ୍ରମଣ କରେ ନାହିଁ । ବ୍ରହ୍ମଚର୍ଯ୍ୟ ପାଳନକାରୀର ସନ୍ତାନ ତେଜସ୍ୱୀ ଓ ନୀରୋଗ ହୁଅନ୍ତି । ଅନ୍ୟ ପକ୍ଷରେ ବାରଂବାର ସ୍ତ୍ରୀସଙ୍ଗ ଯୋଗୁଁ ରଜବୀର୍ଯ୍ୟର ଶକ୍ତି ହ୍ରାସ ପାଏ ଓ ସନ୍ତାନ ଦୁର୍ବଳ ହୁଅନ୍ତି । ଭୋଗାସକ୍ତିରୁ ଉତ୍ପନ୍ନ ସନ୍ତାନ ରୋଗୀ ଓ ଭୋଗୀ ହୁଅନ୍ତି । ଧର୍ମାତ୍ମା ଓ ନୀରୋଗ ସନ୍ତାନ ପାଇବାକୁ ହେଲେ ଧର୍ମସମ୍ମତ ବିଧିରେ ସ୍ତ୍ରୀସଙ୍ଗ କରିବା ଆବଶ୍ୟକ ।

ଭଗବାନ ଧର୍ମସମ୍ମତ ରତିକୁ ନିଜର ସ୍ୱରୂପ ବୋଲି କହିଛନ୍ତି—**"ଧର୍ମାବିରୁଦ୍ଧୋ ଭୂତେଷୁ କାମୋଽସ୍ମି ଭରତର୍ଷଭ ॥"** (ଗୀତା ୭ । ୧୧)

ଯେଉଁ ବ୍ୟକ୍ତି କେବଳ ଶାସ୍ତ୍ରମର୍ଯ୍ୟାଦା ଅନୁସାରେ ସନ୍ତାନୋତ୍ପତ୍ତି ନିମିତ୍ତ ଋତୁକାଳରେ ସ୍ତ୍ରୀ-ସହବାସ କରେ, ସେ ଗୃହସ୍ଥ ହୋଇ ମଧ୍ୟ ବ୍ରହ୍ମଚାରୀ ଅଟେ । ପରନ୍ତୁ କେବଳ ଭୋଗେଚ୍ଛା ଓ ସୁଖେଚ୍ଛା ପାଇଁ ସ୍ତ୍ରୀସଙ୍ଗ କରୁଥିବା ବ୍ୟକ୍ତି ପାପ ଅର୍ଜନ କରେ । ବିଷୟ ଭୋଗ କଥା ଚିନ୍ତା କରିବାମାତ୍ରେ ପତନ ଆରମ୍ଭ ହୋଇଯାଏ ବୋଲି ଭଗବାନ ଗୀତାରେ କହିଛନ୍ତି (୨ । ୬୨-୬୩), ପୁନଶ୍ଚ କହିଛନ୍ତି ଯେ କାମନା ହିଁ ପାପର ମୂଳ କାରଣ ତଥା ନରକର ଦ୍ୱାର (୩ । ୩୭; ୧୬ । ୨୧) । ତେଣୁ ସୁଖଭୋଗ ଇଚ୍ଛାରେ ସ୍ତ୍ରୀସଙ୍ଗ କରିବା ନରକ, ପାପ ଓ ଅନର୍ଥର କାରଣ ।

ଦୃଢ଼ ଉଦ୍ଦେଶ୍ୟ ଥିଲେ ବ୍ରହ୍ମଚର୍ଯ୍ୟ-ପାଳନ ଦୁଷ୍କର ହୁଏ ନାହିଁ । ବ୍ରହ୍ମଚର୍ଯ୍ୟ ରକ୍ଷା ମନୁଷ୍ୟ ନିମନ୍ତେ ମୁଖ୍ୟ କଥା । ଅସଂଯମୀ ମନୁଷ୍ୟ ପଶୁଠାରୁ ମଧ୍ୟ ହୀନ । ପଶୁମାନଙ୍କ ମଧ୍ୟରେ ଗଧ, କୁକୁର ପ୍ରଭୃତି ନୀଚ ଗଣ୍ୟ ହୁଅନ୍ତି । କିନ୍ତୁ ବର୍ଷରେ ସେମାନଙ୍କର ମାତ୍ର ଗୋଟିଏ ମାସ ହିଁ ଋତୁକାଳ ହୁଏ । ସେତକ ସମୟ ରହିଗଲେ ସେମାନଙ୍କର ସଂଯମ ହୋଇଯାଏ । ଗଧର ଶ୍ରାବଣ ମାସରେ, କୁକୁରର କାର୍ତ୍ତିକ ମାସରେ ଓ ବିରାଡ଼ିର ମାଘ ମାସରେ ଋତୁକାଳ ହୁଏ । ସେତକ ସମୟ ସେମାନଙ୍କୁ ସଂଯମିତ ରଖାଗଲେ ବର୍ଷଯାକ ସେମାନେ ସଂଯମୀ ହୁଅନ୍ତି । ପରନ୍ତୁ ମନୁଷ୍ୟ ପାଇଁ ବାରମାସ ମୁକ୍ତ । ତେଣୁ ସେ ନିଜେ ହିଁ ନିଜକୁ ରକ୍ଷା କରିପାରିବ । ଶାସ୍ତ୍ରରେ ମନୁଷ୍ୟକୁ ବ୍ରହ୍ମଚର୍ଯ୍ୟ-ପାଳନ ପାଇଁ ଆଜ୍ଞା ଦିଆଯାଇଛି । ତଦ୍ଦ୍ୱାରା ବ୍ରହ୍ମବିଦ୍ୟା ପ୍ରାପ୍ତ ହୁଏ ଓ ପରମ ଆନନ୍ଦ ମିଳେ ।

**ପ୍ରଶ୍ନ**—ପୁରୁଷ ସଂଯମୀ ପରନ୍ତୁ ସ୍ତ୍ରୀ ଅସଂଯମୀ ହେଲେ କ'ଣ କରାଯିବ?

**ଉତ୍ତର**—ପ୍ରକୃତରେ ପୁରୁଷ ହିଁ ସ୍ତ୍ରୀକୁ ସ୍ଖଳିତ କରେ । କାମବେଗକୁ ରୋକିବା ପାଇଁ ସ୍ତ୍ରୀର ଶକ୍ତି ପୁରୁଷ ଠାରୁ ଅଧିକ ।

ପ୍ରଥମରୁ ସଂଯମୀ ହେଲେ ବ୍ରହ୍ମଚର୍ଯ୍ୟ ପାଳନ ସହଜ ହୁଏ । ଭୋଗାସକ୍ତି ଅଧିକ ହେବା ପରେ ସଂଯମ କଷ୍ଟସାଧ୍ୟ ହୁଏ । କାମମୁକ୍ତ ବେଳାରେ ସ୍ତ୍ରୀ-ପୁରୁଷ ଉଭୟେ ଶାନ୍ତଚିତ୍ତ ହୋଇ ସଂଯତ ଜୀବନଯାପନ ପାଇଁ ବିଚାର କରିବେ । ରାତ୍ରିରେ ପୃଥକ୍ ପୃଥକ୍ ଶୟନ କରିବା ଲାଭପ୍ରଦ ହୁଏ ।

ମନୁଷ୍ୟ ସବୁବେଳେ ସଂଯମୀ ହୋଇପାରେ; କିନ୍ତୁ ସବୁବେଳେ ଭୋଗୀ ହୋଇପାରେ ନାହିଁ । ତେଣୁ ସଂଯମରକ୍ଷା ପାଇଁ ନିରାଶ ନ ହେବା ତଥା ଗର୍ଭପାତ, ଗର୍ଭନିରୋଧ ଆଦି ମହାପାପରୁ ଦୂରେଇ ରହିବା ଉଚିତ ।

ଯେପର୍ଯ୍ୟନ୍ତ ହିନ୍ଦୁସମାଜ ଗର୍ଭପାତ ପରି ମହାପାପରୁ ରକ୍ଷା ନ ପାଇଛି, ସେପର୍ଯ୍ୟନ୍ତ ଦୁଷ୍ପରିଣାମରୂପୀ ପତନକୁ ଏଡ଼ାଇ ଦେଇ ହେବ ନାହିଁ। ଗର୍ଭପାତ ବ୍ରହ୍ମହତ୍ୟା ଠାରୁ ଦ୍ୱିଗୁଣିତ ଅପରାଧ ଅଟେ। ନିଜ ଗୋଷ୍ଠୀର ଉନ୍ନତି ଓ ବୃଦ୍ଧି ପାଇଁ ଏଥିରୁ ମୁକ୍ତି ପାଇବା ଉଚିତ। ଜଣେ ଭାଇ ମୋତେ କହିଲେ ଯେ ଗତବର୍ଷ ଭାରତରେ ଏକୋଇଶ ଲକ୍ଷ ଗର୍ଭପାତ କରାଯାଇଛି। ଲୋକ-ପରଲୋକକୁ ନଷ୍ଟ କରୁଥିବା ଏହି ଜଘନ୍ୟ ହତ୍ୟା ଯୋଗୁଁ ଆମ ସମାଜର ଗତି କେଉଁ ଆଡ଼କୁ ହେବ, ତାହା ପରମାତ୍ମା ଜାଣନ୍ତି। ଧର୍ମପରାୟଣ ଭାରତବର୍ଷରେ କେତେ ଯେ ଧର୍ମବିରୁଦ୍ଧ କର୍ମ ହେଉଅଛି, ତାହାର ପାରାବାର ନାହିଁ। ସମୟ ଥାଉ ଥାଉ ସଚେତନ ନ ହେଲେ ପରିଣାମ ଅତି ଭୟଙ୍କର ହେବ—

**କା ବରଷା ସବ କୃଷୀ ସୁଖାନେଁ। ସମୟ ଚୁକେଁ ପୁନି କା ପଛିତାନେଁ॥**

(ମାନସ, ବାଳ. ୨୬୧। ୨)

କାହାକୁ ନିନ୍ଦା କରିବା ମୋର ଉଦ୍ଦେଶ୍ୟ ନୁହେଁ। କାହାକୁ ଛୋଟ ବୋଲି କହିବା ମୋର ଲକ୍ଷ୍ୟ ନୁହେଁ। ମୋର ଏତିକି ବକ୍ତବ୍ୟ ଯେ ମନୁଷ୍ୟଜନ୍ମ ପାଇ ଅନ୍ତତଃ ଗର୍ଭପାତ ପରି ମହାପାପରୁ ଦୂରେଇ ରହିବା ଆବଶ୍ୟକ।

**ବଡ଼େଁ ଭାଗ ମାନୁଷ ତନୁ ପାୱା। ସୁର ଦୁର୍ଲଭ ସବ ଗ୍ରଂଥହ୍ନି ଗାୱା॥**

(ମାନସ, ଉତ୍ତର. ୪୩। ୪)

**କବହୁଁକ କରି କରୁନା ନର ଦେହୀ। ଦେତ ଈସ ବିନୁ ହେତୁ ସନେହୀ॥**

(ମାନସ, ଉତ୍ତର. ୪୪। ୩)

**ଦୁର୍ଲଭୋ ମାନୁଷୋ ଦେହୋ ଦେହିନାଂ କ୍ଷଣଭଙ୍ଗୁରଃ।**

(ଶ୍ରୀମଦ୍‌ଭାଗବତ ୧୧। ୨। ୨୯)

**ଲବ୍‌ଧ୍ୱା ସୁଦୁର୍ଲଭମିଦଂ ବହୁସମ୍ଭବାନ୍ତେ**
**ମାନୁଷ୍ୟମର୍ଥଦମନିତ୍ୟମପୀହ ଧୀରଃ।**

(ଶ୍ରୀମଭା. ୧୧। ୯। ୨୯)

ଏହି ପ୍ରକାରେ ଯେଉଁ ମନୁଷ୍ୟଦେହକୁ ଏତେ ଦୁର୍ଲଭ କୁହାଯାଇଛି, ଜୀବାତ୍ମାକୁ ସେହି ଦେହ ଧାରଣ କରିବା ପାଇଁ ଅବରୋଧ କରିବା ଓ ତାକୁ ଦୁର୍ଲଭ ଶରୀର ଦେବାରେ ବାଧା ସୃଷ୍ଟି କରିବା କେଡ଼େ ପାପ ନୁହେଁ ସତେ! ଏପରି ମହାପାପରୁ ଦୂରେଇ ରୁହନ୍ତୁ। *



* ଏ ବିଷୟରେ ଅଧିକ ଜାଣିବା ପାଇଁ ଗୀତାପ୍ରେସରୁ ପ୍ରକାଶିତ **'ସାଧନ-ସୁଧା-ସିନ୍ଧୁ'** ଗ୍ରନ୍ଥ ଅନ୍ତର୍ଗତ 'ଗର୍ଭପାତ ମହାପାପ କାହିଁକି?', 'ସବୁଠାରୁ ବଡ଼ ପାପ—ଗର୍ଭପାତ', 'ସର୍ବଶ୍ରେଷ୍ଠ ହିନ୍ଦୁଧର୍ମ ଏବଂ ଏହାର ହ୍ରାସର କାରଣ' ଇତ୍ୟାଦି ବିଷୟ ପଠନୀୟ।

# (୭) ପାରିବାରିକ କଳହର ସମାଧାନ

**ପ୍ରଶ୍ନ**—ପରିବାର ମଧ୍ୟରେ କାହିଁକି କଳହ, ଅଶାନ୍ତି ଓ ମନାନ୍ତର ହୁଏ?

**ଉତ୍ତର**—ପରିବାରର ପ୍ରତ୍ୟେକ ଲୋକ ନିଜ ମନ ମୁତାବକ କାର୍ଯ୍ୟ କରିବାକୁ ଚାହେଁ। ନିଜର ସୁଖସ୍ୱାଚ୍ଛନ୍ଦ୍ୟ ଖୋଜେ। ନିଜର ବଡ଼ପଣ ଦେଖାଇବା ପାଇଁ ଓ ସ୍ୱାର୍ଥସିଦ୍ଧ କରିବା ପାଇଁ ଚେଷ୍ଟା କରେ। ଏହି ସବୁ କାରଣରୁ ଅର୍ଥାତ୍ ବ୍ୟକ୍ତିଗତ ସ୍ୱାର୍ଥରୁ ପରିବାର ମଧ୍ୟରେ କଳହ, ମନାନ୍ତର ଓ ଅଶାନ୍ତି ଜାତ ହୁଏ। କୁକୁରମାନେ ପରସ୍ପର ମଧ୍ୟରେ ଖୁସିରେ ଖେଳନ୍ତି, କିନ୍ତୁ କେହି ଆଗରେ ଖଣ୍ଡିଏ ରୁଟି ପକାଇଦେଲେ ସେମାନେ କଳହ ଆରମ୍ଭ କରିଦିଅନ୍ତି। ରୁଟି ଖଣ୍ଡିକ କଳହର କାରଣ ନୁହେଁ। ପ୍ରକୃତ କାରଣ ହେଉଛି ବ୍ୟକ୍ତିଗତ ସ୍ୱାର୍ଥ।

କୁଟୁମ୍ବ ମଧ୍ୟରେ ରହି ଯେ କେବଳ ନିଜର ସୁଖସ୍ୱାଚ୍ଛନ୍ଦ୍ୟ ଚାହେଁ, ସେ କୁଟୁମ୍ବର ଲୋକ ନ ହୋଇ ଏକ ପୃଥକ୍ ବ୍ୟକ୍ତି ଭାବରେ ରହେ। ଯେ କୁଟୁମ୍ବର ବଡ଼, ଛୋଟ, ସମବୟସ୍କ ସଭିଙ୍କ ମଙ୍ଗଳ ଚାହେଁ ଓ ତଦନୁସାରେ କାର୍ଯ୍ୟ କରେ, ସେ ପ୍ରକୃତରେ କୁଟୁମ୍ବର ଲୋକ। ନିଜର କର୍ତ୍ତବ୍ୟ ପାଳନ କରି ଅନ୍ୟମାନଙ୍କର ଅଧିକାର ରକ୍ଷା କଲେ ଏବଂ ଅନ୍ୟମାନଙ୍କୁ ଆଦର ସତ୍କାର କଲେ, ସେମାନଙ୍କୁ ସୁଖ ଓ ସୁବିଧା ଦେଲେ କୁଟୁମ୍ବରେ ଶାନ୍ତି ସ୍ଥାପିତ ହୁଏ।

**ପ୍ରଶ୍ନ**—ଭାଇ-ଭାଇ ନିଜ ନିଜ ମଧ୍ୟରେ କଳହ କଲେ ମାତାପିତା କ'ଣ କରିବେ?

**ଉତ୍ତର**—ମାତାପିତା ନ୍ୟାୟୋଚିତ କଥା କହିବେ। ସାନ ପୁଅକୁ କହିବେ—ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ଶ୍ରୀରାମଙ୍କୁ ଯେପରି ଆଦର ସମ୍ମାନ କରୁଥିଲେ ଏବଂ ଭୀମ, ଅର୍ଜୁନ ପ୍ରଭୃତି ବଡ଼ଭାଇ ଯୁଧିଷ୍ଠିରଙ୍କ ପ୍ରତି ଯେପରି ଶିଷ୍ଟାଚାର ପ୍ରଦର୍ଶନ କରୁଥିଲେ, ତୁମେ ସେପରି ବ୍ୟବହାର କର। ବଡ଼ ପୁଅକୁ କହିବେ—ସାନ ଭାଇମାନଙ୍କ ପ୍ରତି ଶ୍ରୀରାମ ଯେପରି ପ୍ରୀତିପୂର୍ଣ୍ଣ ବ୍ୟବହାର କରୁଥିଲେ* ଓ ଯୁଧିଷ୍ଠିର ଯେପରି ସାନଭାଇମାନଙ୍କ ପ୍ରତି ସ୍ନେହ-ଶ୍ରଦ୍ଧା ଦେଖାଉଥିଲେ, ତୁମେ ତାହା ଅନୁକରଣ କର।

**ପ୍ରଶ୍ନ**—ଭାଇ-ଭଉଣୀ ନିଜ ନିଜ ମଧ୍ୟରେ କଳହ କଲେ ମାତାପିତା କ'ଣ କରିବେ?

**ଉତ୍ତର**—ମାତାପିତା ଝିଅର ପକ୍ଷ ନେବେ। କାରଣ ସେ ଅଳ୍ପଦିନ ପାଇଁ

---

* ଏଥିପାଇଁ ଗୀତାପ୍ରେସ୍‌ରୁ ପ୍ରକାଶିତ 'ତତ୍ତ୍ୱ ଚିନ୍ତାମଣି' (ହିନ୍ଦୀ)ର ଦ୍ୱିତୀୟ ଭାଗରେ 'ରାମାୟଣମେଁ ଆଦର୍ଶ ଭ୍ରାତୃପ୍ରେମ' ଶୀର୍ଷକ ଲେଖାଟିକୁ ମନୋଯୋଗପୂର୍ବକ ପଢ଼ିବା ଉଚିତ।

ଘରେ ରହିବ । ସେ ଦାନ ପାଇବାର ପାତ୍ରୀ* ଓ ଅତି ଆଦରଣୀୟା । ପୁଅ ଘରର ମାଲିକ ହେବ । ସେ ହିଁ ଘରେ ରହିବ । ଏକାନ୍ତରେ ପୁଅକୁ ବୁଝାଇବା ଉଚିତ—ପୁଅ! ଭଉଣୀକୁ ହତାଦର କର ନାହିଁ । ସେ ଏଠାରେ ସବୁଦିନ ରହିବ ନାହିଁ, ତା' ଘରକୁ ଚାଲିଯିବ । ତୁ ଏହି ଘରର ମାଲିକ ହେବୁ ।

ଭାଇଠାରୁ ଆଶା ରଖିବା ଭଉଣୀ ପକ୍ଷରେ ଉଚିତ ନୁହେଁ । ଭାଇ ଯେତିକି ଦେବ, ସେ ସେଥିରୁ ଅଳ୍ପ ନେବା ଲାଗି କହିବ । ସେ ବୁଝିବା ଉଚିତ ଯେ ଭାଇଘରୁ ନେଇ ସେ ନିଜ ଘର କେତେ ଦିନ ଚଳାଇବ? ନିଜ ଘର ପାଇଁ ନିଜକୁ ପରିଶ୍ରମ କରିବାକୁ ପଡ଼ିବ ।

**ପ୍ରଶ୍ନ**—ପୁଅ-ବୋହୂ ନିଜ ନିଜ ମଧ୍ୟରେ କଳହ କଲେ ମାତାପିତାଙ୍କ କର୍ତ୍ତବ୍ୟ କ'ଣ?

**ଉତ୍ତର**—ମାତାପିତା ଉଭୟଙ୍କୁ ବୁଝାଇବେ—ଆମେ ଆଉ କେତେଦିନ ବଞ୍ଚିବୁ? ତୁମେ ଦୁହେଁ ଏହି ଘରର ମାଲିକ । ତୁମେ ଯଦି ପରସ୍ପର କଳହ କରିବ, କିଏ ପରିବାରକୁ ପାଳନ କରିବ? ଘରର ସବୁ ଭାର ତୁମ ଦୁହିଙ୍କ ଉପରେ ରହିଛି ।

ପୃଥକ୍ ଭାବରେ ପୁଅକୁ ବୁଝାଇବା ଉଚିତ—ପୁଅ! ତୋର ସ୍ତ୍ରୀ ନିଜର ମାତାପିତା ପ୍ରଭୃତିଙ୍କୁ ତ୍ୟାଗ କରି ତୋ ନିମନ୍ତେ ଏଠାକୁ ଆସିଛି । ତୁ ନିଜ ପିତାଙ୍କ ଗୃହରେ ଅଧିକାର ଧରି ବସିଛୁ; ତୁ କିଛି ତ୍ୟାଗ କରି ନାହୁଁ । ଏହି ତ୍ୟାଗମୂର୍ତ୍ତି ପତ୍ନୀକୁ ତନ-ମନ-ଧନ ବିନିମୟରେ ପ୍ରସନ୍ନ ରଖିବା ତୋର କର୍ତ୍ତବ୍ୟ ଅଟେ । ମାତ୍ର ମନେରଖ, ତୁ ପତି ବା ପାଳକ ଅଟୁ । ତୁ ପତ୍ନୀର ଦାସ ବା ବୋଲକରା ଯେପରି ହୋଇ ନ ଯାଉ । ତା'ର ହିତ ପାଇଁ ଅନାସକ୍ତ ହୋଇ କାର୍ଯ୍ୟ କରିବୁ । ଜୀବର ହିତସାଧନ କରିବା ମନୁଷ୍ୟର କର୍ତ୍ତବ୍ୟ । ତୁ ନିଜ ସ୍ତ୍ରୀର ହିତ କରି ନ ପାରିଲେ ସଂସାରରେ ଆଉ କ'ଣ କରିପାରିବୁ? ମାତାପିତା ବୋହୂକୁ ମଧ୍ୟ ବୁଝାଇବା ଉଚିତ—ଆରେ ମାଆ! ସ୍ୱାମୀ ପାଇଁ ତୁ ନିଜର ମାତା-ପିତା, ଭାଇ-ଭାଉଜ ଆଦି ସମସ୍ତଙ୍କୁ ତ୍ୟାଗ କରିଛୁ । ଯଦି ତାହାର ମଧ୍ୟ ସୁଖ ଓ ସେବା କରିପାରିବୁ ନାହିଁ, ତାହେଲେ ଆଉ କ'ଣ କରି ପାରିବୁ? ସମୁଦ୍ର ପାର କରି ଆସିଛୁ; ଅଥଚ କୂଳରେ ବୁଡ଼ି ମରିବୁ! ଏହା କେଡ଼େ ଲଜ୍ଜାର ବିଷୟ । ପାତିବ୍ରତ୍ୟ ତୋର ମୁଖ୍ୟ ଧର୍ମ—

---

* ଭଉଣୀ, ଝିଅ ଓ ଭାଣିଜୀକୁ ଭୋଜନ ଦେବା ବ୍ରାହ୍ମଣ-ଭୋଜନ ସମାନ ପୁଣ୍ୟକାର୍ଯ୍ୟ ଅଟେ ।

**ଏକଇ ଧର୍ମ ଏକ ବ୍ରତ ନେମା । କାୟଁ ବଚନ ମନ ପତି ପଦ ପ୍ରେମା ॥**

(ମାନସ, ଅରଣ୍ୟ. ୫ । ୫)

**ପ୍ରଶ୍ନ**—ନଣନ୍ଦ ଓ ଭାଉଜ ମଧ୍ୟରେ କଳହ ହେଲେ ମାତା-ପିତା କ'ଣ କରିବେ?

**ଉତ୍ତର**—ମାଆ ଝିଅକୁ ବୁଝାଇ କହିବେ—ଝିଅ! ତୋର ଭାଉଜ କିଛି କହିଲେ ତା' କଥାକୁ ଧରିବୁ ନାହିଁ । ସେ ଏ ଘରର ଗୃହିଣୀ । ତାକୁ ମୋ'ଠାରୁ ଅଧିକ ଆଦର କରିବୁ । ମୋତେ ଅଳ୍ପ ଆଦର କଲେ ମଧ୍ୟ ମୁଁ ଦୁଃଖ କରିବି ନାହିଁ । ତୁ ମୋର ଝିଅ ହୋଇଥିବାରୁ ତୋ' କଥାକୁ ମୁଁ ଧରିବି ନାହିଁ ।

ନଣନ୍ଦକୁ ଅଧିକ ଆଦର କରିବା ଭାଉଜର କର୍ତ୍ତବ୍ୟ । କାରଣ ସେ ଅତିଥି ପରି । ନଣନ୍ଦର ପିଲାମାନଙ୍କୁ ନିଜ ପିଲାଙ୍କ ଅପେକ୍ଷା ଅଧିକ ସ୍ନେହ କରିବା ଉଚିତ* । ପିଲାମାନେ ଖୁସୀ ହେଲେ ମାଆ ଖୁସୀ ରହିବ । ଏହାଛଡ଼ା ନଣନ୍ଦକୁ ମଧ୍ୟ ଖୁସୀ ରଖିବା ଉଚିତ । ଅନ୍ୟକୁ ଆନନ୍ଦରେ ରଖିଲେ ନିଜର ଉଦ୍ଧାର ହୋଇ ପାରିବ ।

ଝିଅ ପ୍ରତି ଅଧିକ ମମତା ରଖି ମାଆ ଝିଅକୁ କିଛି ଦେବାବେଳେ ଝିଅ ନେବା ଉଚିତ ନୁହେଁ । ସେ ମାଆକୁ କହିବ—ଭାଉଜ ଯାହା ଦେବେ ତାହା ମୁଁ ନେବି । ତୁ ମୋତେ ଦେଲେ ଭାଉଜ ଭଲ ପାଇବେ ନାହିଁ । ତୁମ ଦୁହିଙ୍କ ମଧ୍ୟରେ ମନାନ୍ତର କରିବା ପାଇଁ ମୁଁ ଏ ଘରକୁ ଆସି ନାହିଁ ।  ତୋ'ଠାରୁ ନେଲେ ଅଳ୍ପଦିନ ପାଇଁ ନେବି, କିନ୍ତୁ ଭାଉଜଙ୍କ ଠାରୁ ସବୁଦିନ ପାଇଁ ମିଳିବ । ତେଣୁ ସବୁ ଦୃଷ୍ଟିରୁ ଭାଉଜଙ୍କ ହାତରୁ ନେବା ଭଲ ।

**ପ୍ରଶ୍ନ**—ବଡ଼ଭାଇ ମାତା-ପିତାଙ୍କ ସହିତ କଳହ କଲେ ସାନ ଭାଇମାନେ କ'ଣ କରିବେ?

**ଉତ୍ତର**—ସାନଭାଇ ବଡ଼ଭାଇର ଚରଣରେ ପ୍ରଣାମ କରି କହିବେ—ଭାଇ! ତୁମେ ଏପରି ବ୍ୟବହାର କଲେ ଆମେ କାହାକୁ ଆଦର୍ଶ ମାନିବୁ? ଆମ ପ୍ରତି କୃପା ରଖି ବାପାମାଆଙ୍କୁ ଆଦର ସମ୍ମାନ କର । ଏପରି କଲେ ଦୁଇ ପ୍ରକାର ଲାଭ ହେବ । ପ୍ରଥମତଃ କୁଟୁମ୍ବ ଓ ଗ୍ରାମରେ ତଦ୍ଦ୍ୱାରା ଉତ୍ତମ ପ୍ରଭାବ ପଡ଼ିବ । ଦ୍ୱିତୀୟତଃ ତୁମକୁ ଅନୁକରଣ କରି ଆମେ ଉତ୍ତମ ଆଚରଣ କରିବୁ । ଏହାର ପୁଣ୍ୟ ତୁମକୁ

---

* ନଣନ୍ଦର ସନ୍ତାନମାନଙ୍କୁ ଭାଉଜ ସବୁଠାରୁ ବେଶୀ ଆଦର ସ୍ନେହ କରିବେ । ତା'ପରେ ସାନ ଯାଆର ପିଲାଙ୍କୁ, ତୃତୀୟରେ ବଡ଼ ଯାଆର ପିଲାମାନଙ୍କୁ, ଚତୁର୍ଥରେ ଶାଶୁଙ୍କ ସନ୍ତାନମାନଙ୍କୁ ଓ ଶେଷରେ ନିଜ ସନ୍ତାନମାନଙ୍କୁ ଆଦର ସ୍ନେହ କରିବେ ।

ମିଳିବ । ତେଣୁ ତୁମ ଆଚରଣ ଆଦର୍ଶ ହେବା ଉଚିତ । ତୁମେ ଆମର ପିତା ସଦୃଶ । ତେଣୁ ତୁମକୁ ନିବେଦନ କରିବା ଛଡ଼ା ଆମେ ଅଧିକ କ'ଣ କରିପାରିବୁ ।

**ପ୍ରଶ୍ନ**—ସାନଭାଇ ମାତା-ପିତାଙ୍କ ସହିତ କଳହ କଲେ ବଡ଼ଭାଇର କର୍ତ୍ତବ୍ୟ କ'ଣ?

**ଉତ୍ତର**—ବଡ଼ଭାଇ ସାନଭାଇକୁ ବୁଝାଇବେ—ଆମେ ଦୁହେଁ ତାଙ୍କର ପୁଅ । ମାତାପିତା ଆମ୍ଭମାନଙ୍କର ସବୁବେଳେ ପୂଜନୀୟ । ମାତାପିତାଙ୍କ କୃପାରୁ ଆମକୁ ଏହି ଦୁର୍ଲଭ ମନୁଷ୍ୟଦେହ ମିଳିଛି । ଆମେ ସେମାନଙ୍କର ଋଣ କେବେହେଲେ ପରିଶୋଧ କରି ପାରିବା ନାହିଁ । ସେମାନଙ୍କ କଥା ଅନୁସାରେ ଚଳି ସେମାନଙ୍କୁ ପ୍ରସନ୍ନ ରଖି ପାରିଲେ ହୁଏତ ଋଣରୁ ଛାଡ଼ ପାଇ ପାରିବା! ଆମେ ଆମ ଚମଡ଼ାରେ ଜୋତା ତିଆରି କରି ସେମାନଙ୍କୁ ଦେଲେ ମଧ୍ୟ ତାହା ଯଥେଷ୍ଟ ନୁହେଁ; କାରଣ ଏ ଦେହର ଚମଡ଼ା ସେମାନଙ୍କ ଠାରୁ ହିଁ ମିଳିଛି । ଆମ ଉପରେ ସେମାନଙ୍କର ସମ୍ପୂର୍ଣ୍ଣ ଅଧିକାର ରହିଛି । ତେଣୁ ସେମାନଙ୍କ ଇଚ୍ଛାରେ ଆମକୁ ଚଳିବାକୁ ପଡ଼ିବ ।

**ପ୍ରଶ୍ନ**—ଭଉଣୀ ମାତାପିତାଙ୍କ ସହିତ କଳହ କଲେ ଭାଇର କର୍ତ୍ତବ୍ୟ କ'ଣ?

**ଉତ୍ତର**—ଭାଇ ନ୍ୟାୟୋଚିତ କାର୍ଯ୍ୟ କରିବେ । ତେବେ ତାଙ୍କ ପକ୍ଷେ ଭଉଣୀକୁ ସମର୍ଥନ କରିବା ଉଚିତ ହେବ । ସେ ମାତାପିତାଙ୍କୁ କହିବେ—ଭଉଣୀ ଆମ ଘରକୁ ଅତିଥି ପରି ଆସିଛି । ତାକୁ ସ୍ନେହ ଆଦର କରିବା ଉଚିତ । ଯଦି ଭଉଣୀର ଦୋଷ ଥିବ, ତାକୁ ଏକାନ୍ତରେ କହିବେ—ମାଆବାପା ଆମର ପୂଜ୍ୟ । ସେମାନଙ୍କ ସହିତ କଳି କରି ତୁ କି ଗୌରବ ପାଇବୁ? ଆମେ ସମସ୍ତେ ସେମାନଙ୍କୁ ଆଦର-ସମ୍ମାନ କରିବା ଉଚିତ । ସାଧାରଣ କଥାରୁ ସେମାନଙ୍କୁ ଅସମ୍ମାନ କରିବା ଆମ ପକ୍ଷରେ ଶ୍ରେୟସ୍କର ନୁହେଁ ।

**ପ୍ରଶ୍ନ**—ସାନଭାଇ ଭାଉଜ ସହିତ କଳି କଲେ ବଡ଼ଭାଇର କର୍ତ୍ତବ୍ୟ କ'ଣ?

**ଉତ୍ତର**—ବଡ଼ଭାଇ ସାନଭାଇକୁ ଧମକାଇ କହିବେ—ତୁ ଏପରି କରିବା ଠିକ୍ ନୁହେଁ । ଭାଉଜ ତୋର ମାଆ ସଦୃଶ । ସୀତାଙ୍କ ସଙ୍ଗେ ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ କିପରି ବ୍ୟବହାର କରୁଥିଲେ, ସେମାନଙ୍କ ଚରିତ୍ର ପଢ଼ି ତାହା ବିଗ୍ଭର କର । ସେମାନଙ୍କ ଶିଷ୍ଟ ବ୍ୟବହାରକୁ ହୃଦୟଙ୍ଗମ କରି ନିଜର ଭାବନାକୁ ନିର୍ମଳ କର । ତାହାହେଲେ ଭାଉଜ ପ୍ରତି ତୋର ବ୍ୟବହାର ମାର୍ଜିତ ହୋଇ ପାରିବ ।

**ପ୍ରଶ୍ନ**—ଦୁଇ ଯା' ପରସ୍ପର କଳହ କଲେ ଭାଇମାନେ କ'ଣ କରିବେ?

**ଉତ୍ତର**—ସେମାନେ ନିଜ ନିଜ ପତ୍ନୀଙ୍କୁ ବୁଝାଇବେ । ସାନଭାଇ ନିଜ ସ୍ତ୍ରୀକୁ

କହିବେ—ଦେଖ, ତୁମେ ବଡ଼ଭାଇଙ୍କୁ ପିତୃତୁଲ୍ୟ ଏବଂ ଭାଉଜଙ୍କୁ ମାତୃତୁଲ୍ୟ ସମ୍ମାନ କର । ବଡ଼ଭାଇ ନିଜ ସ୍ତ୍ରୀକୁ କହିବେ—ମୋର ସାନଭାଇ ତୁମ ପୁତ୍ରତୁଲ୍ୟ ଓ ତା'ର ପତ୍ନୀ କନ୍ୟାତୁଲ୍ୟ ଅଟେ । ତେଣୁ ସେମାନଙ୍କୁ ଆଦର କର । ତୁମର ସାନ ଯା' କିଛି କହିଲେ, ମନକୁ ନିଅ ନାହିଁ । ତାକୁ କ୍ଷମା କର । କାରଣ ତୁମେ ତା'ଠାରୁ ବଡ଼ । ତାର ଦୋଷ ସହି ନ ପାରିଲେ ତୁମେ ବଡ଼ କ'ଣ ହେଲ? ତା'ର ଦୋଷକୁ ସହି ତାକୁ ସ୍ନେହ କଲେ ତୁମର ସ୍ଥାନ ଉଚ୍ଚ ହେବ । କ୍ରୋଧ କରିବା ଲୋକ ଶେଷରେ ପରାଜିତ ହୁଏ । ଅନ୍ୟର କ୍ରୋଧକୁ ସହିବା ଲୋକର ବିଜୟ ହୁଏ ।

ଭାଇମାନେ ସ୍ତ୍ରୀମାନଙ୍କ କଳହକୁ ନିଜ ମନକୁ ନ ନେବା ପାଇଁ ଚେଷ୍ଟା କରିବେ । ସ୍ତ୍ରୀଲୋକମାନଙ୍କର ସହିବା ଶକ୍ତି କମ୍ । ସେମାନେ ଛୋଟ ଛୋଟ ବିଷୟରେ ମନାନ୍ତର ସୃଷ୍ଟି କରନ୍ତି । ଏହା ବୁଝି ଭାଇମାନେ ନିଜ ନିଜ ମଧ୍ୟରେ କଳହ ନ କରିବାକୁ ସାବଧାନ ରହିବେ । ତା'ସତ୍ତ୍ୱେ ସ୍ତ୍ରୀମାନେ ନିରନ୍ତର କଳହ କଲେ ଭିନ୍ନେ ହୋଇଯିବେ । ସଦ୍ଭାବପୂର୍ବକ ରହିବା ହିଁ ଭିନ୍ନେ ହେବାର ଉଦ୍ଦେଶ୍ୟ ହେବା ଉଚିତ । ଭିନ୍ନେ ହୋଇ ମଧ୍ୟ ଯଦି ପୁଣି କଳହ କଲେ, ଭିନ୍ନେ ହେବାର କି ଲାଭ ମିଳିଲା? ଅତଏବ ପରସ୍ପର ମଧ୍ୟରେ ସଦ୍ଭାବପୂର୍ବକ ରହିବା ପାଇଁ ଏକାଠି ରହିବା ଉଚିତ ଏବଂ ସଦ୍ଭାବପୂର୍ବକ ରହିବା ପାଇଁ ହିଁ ଭିନ୍ନେ ହେବା ଉଚିତ । ଭିନ୍ନେ ହୋଇ ମଧ୍ୟ ନିଜ ନିଜର ଭାଗ ପାଇଁ କଳହ କରିବେ ନାହିଁ । ବଡ଼ଭାଇ ଯେତିକି ଦେବେ, ସାନଭାଇ ତାହା ନେବ । ବଡ଼ଭାଇର କର୍ତ୍ତବ୍ୟ ହେଉଛି ସେ ନିଜ ଦୃଷ୍ଟିରେ ସାନଭାଇକୁ ବେଶୀ ଦେବେ; କାରଣ ସେ ସାନ ଓ ସ୍ନେହର ପାତ୍ର । ବଡ଼ଭାଇ ନିଜ ଦୃଷ୍ଟିରେ ଅଧିକ ଦେଲେ ମଧ୍ୟ ଯଦି ସାନଭାଇ ତା' ଦୃଷ୍ଟିରେ ଯଥୋଚିତ ମନେ ନ କରେ, ତେବେ ବଡ଼ଭାଇ ସାନଭାଇର ଦୃଷ୍ଟିକୋଣକୁ ଆଦର ଦେବେ ।

ତ୍ୟାଗର ମହତ୍ତ୍ୱ ଅଧିକ । ତୁଚ୍ଛ ଜିନିଷପତ୍ର ପାଇଁ ରାଗ-ଦ୍ୱେଷ କରିବା ବଡ଼ ଭୁଲ୍ ଓ ନିର୍ବୋଧତା । କାରଣ ସବୁ ବସ୍ତୁ ଏଇଠି ରହିଯିବ, ଅଥଚ ରାଗ-ଦ୍ୱେଷ ଆମ ସଙ୍ଗରେ ଯାଇ ଆମକୁ ପତନ ମୁହଁକୁ ଠେଲିଦେବ । ତେଣୁ ମନୁଷ୍ୟ ନିଜ ଅନ୍ତଃକରଣକୁ ଶୁଦ୍ଧ ରଖିବା ପାଇଁ ସବୁବେଳେ ପ୍ରଯତ୍ନ କରିବା ଉଚିତ ।

**ପ୍ରଶ୍ନ**—ସନ୍ତାନମାନେ ନିଜ ନିଜ ମଧ୍ୟରେ କଳହ କଲେ ଭାଇମାନେ କ'ଣ କରିବେ?

**ଉତ୍ତର**—ଯେତେଦୂର ସମ୍ଭବ ନିଜ ପୁତ୍ରର ପକ୍ଷ ନ ନେଇ ପୁତୁରାର ପକ୍ଷ ନେବେ । ପୁତୁରା ଅନ୍ୟାୟ କରିଥିଲେ ଶାନ୍ତିପୂର୍ବକ ତାକୁ ବୁଝାଇବେ । ମୁଖ୍ୟ ଉଦ୍ଦେଶ୍ୟ ଯେ ନିଜର ସ୍ୱାର୍ଥ ଓ ଅଭିମାନକୁ ତ୍ୟାଗ କଲେ ସମସ୍ତଙ୍କ ସଙ୍ଗେ ଉତ୍ତମ ବ୍ୟବହାର ହୋଇପାରିବ ।

**ପ୍ରଶ୍ନ**—ମାଆ ଓ ପତ୍ନୀ (ଶାଶୁ ଓ ବୋହୂ) ପରସ୍ପର କଳହ କଲେ ପୁତ୍ରର କର୍ତ୍ତବ୍ୟ କ'ଣ?

**ଉତ୍ତର**—ଏହି ପରିସ୍ଥିତିରେ ପୁତ୍ର ବଡ଼ ଅସୁବିଧାରେ ପଡ଼େ। ମାଆର ପକ୍ଷ ନେଲେ ପତ୍ନୀ କାନ୍ଦେ। ପତ୍ନୀର ପକ୍ଷ ନେଲେ ମାଆ ଦୁଃଖୀ ହୋଇ କହେ—ପୁଅ ଆଉ ମୋ' ବଶରେ ନାହିଁ, ଏଣିକି ସେ ତା' ପତ୍ନୀର ବଶବର୍ତ୍ତୀ ହୋଇଗଲାଣି। ଏ କ୍ଷେତ୍ରରେ ପୁଅ ମାଆର କଥା ରଖିବ ଏବଂ ପତ୍ନୀକୁ ଏକୁଟିଆ ବେଳେ ବୁଝାଇବ—ତୁମ ପାଇଁ ଓ ମୋ ପାଇଁ ଏ ସଂସାରରେ ମାଆ ଭଳି ଆଉ କେହି ଆଦରଣୀୟ ନାହାନ୍ତି। ସେ ହିଁ ସଂସାରରେ ଆମ ଦୁହିଙ୍କର ପ୍ରକୃତ ହିତକାରିଣୀ। ମାଆ ତୁମକୁ କଟୁ ବଚନ କହିଲେ ସୁଦ୍ଧା ହୃଦୟରେ କେବେହେଲେ ତୁମର ଅହିତ ଚାହାନ୍ତି ନାହିଁ। ଯଦି ତୁମେ ମୋତେ ସୁଖୀ ରଖିବାକୁ ଚାହୁଁଛ, ତାହାହେଲେ ମାଆଙ୍କୁ ସୁଖୀ କର।

ପତ୍ନୀର ପ୍ରରୋଚନାରେ ପଡ଼ି ମାଆ-ଭଉଣୀଙ୍କୁ ତିରସ୍କାର ଓ ଅପମାନ କରିବା ଓ ସେମାନଙ୍କ ସଙ୍ଗେ ଝଗଡ଼ା କରିବା ବଡ଼ ଅପରାଧ। ମାଆର କ୍ରୋଧ ଶାନ୍ତ କରିବାକୁ ପୁତ୍ର ଏକାନ୍ତରେ ବୁଝାଇବ—ମାଆ! ଏ ବିଚାରୀ ନିଜ ମାଆବାପା, ଭାଇ, ଭାଉଜ ସମସ୍ତଙ୍କୁ ଛାଡ଼ି ଏଠିକି ଆସିଛି। ଏହାର ଦୁଃଖ ଶୁଣିବାକୁ କେହି ନାହିଁ। ନିଜର ସୁଖ ଦୁଃଖ ସେ କାହାକୁ କହିବ? ତୁମେ ହିଁ ତାହାର ମାଆ। ତାହାର ଦୋଷ ଥିଲେ କ୍ଷମା କରିବ। ସେ ତୁମ ମନରେ ଦୁଃଖ ଦେଲେ ମଧ୍ୟ କୃପାପୂର୍ବକ ସହନ କରିବ। ଆମେ ତାହାର ଆଶ୍ରୟ ନ ହେଲେ ସେ କେଉଁଆଡ଼େ ଯିବ? ବାଲ୍ୟକାଳରେ ତୁମ କୋଳରେ ମୁଁ କେତେଥର ଝାଡ଼ାପରିସ୍ରା କରିଛି। ମୋତେ ନିଜର ଅଙ୍ଗ ବୋଲି ମଣି ତୁମେ ସବୁବେଳେ କ୍ଷମା କରିଛ। ଦାନ୍ତ ଦ୍ୱାରା ଜିଭ କଟିଗଲେ ଜିଭ ଦାନ୍ତକୁ ଦୋଷ ଦିଏ ନାହିଁ। ସେହିପରି ଏହାର କୌଣସି ଦୋଷ ଥିଲେ ସବୁ ପ୍ରକାରେ କ୍ଷମା କରିବ। ମୁଁ ଯେପରି ତୁମ ଦେହର ଅଙ୍ଗ, ତାକୁ ମଧ୍ୟ ସେହିପରି ଭାବିବ।

**ପ୍ରଶ୍ନ**—ଶାଶୁ-ବୋହୂ ପରସ୍ପର କଳହ କଲେ ଶ୍ୱଶୁର କ'ଣ କରିବେ?

**ଉତ୍ତର**—ଶ୍ୱଶୁର ନିଜ ପତ୍ନୀକୁ ପ୍ରଥମେ ଦୋଷ ଦେବେ। ଶାଶୁକୁ ବୁଝାଇବେ ବୋଲି କହି ବୋହୂକୁ ଆଶ୍ୱାସନା ଦେବେ। ଏକାନ୍ତରେ ପତ୍ନୀକୁ କହିବେ—ଦେଖ! ତୁମେ ଏହାର ମାଆ। ନିଜର ମାତା-ପିତା, ଭାଇ-ଭାଉଜ ଆଦି ସଭିଙ୍କୁ ଛାଡ଼ି ସେ ଆମ ଘରକୁ ଆସିଛି। ନିଜ ଝିଅ ଭଳି ଏହାକୁ ପାଳନ କରିବା ତୁମର କର୍ତ୍ତବ୍ୟ। ସେ ତା' ମନର ଦୁଃଖ ତୁମ ଛଡ଼ା ଆଉ କାହାକୁ କହିବ? ସେ କାହାକୁ ଆଶ୍ରା କରିବ?

ଶ୍ୱଶୁର ବୋହୂକୁ ବୁଝାଇବେ—ଦେଖ ମାଆ! ଶାଶୁ ସବୁବେଳେ ବୋହୂର ହିତ ଚାହେଁ। ପୁଅ ଜନ୍ମ ହେଉ ହେଉ ମନେ ମନେ ସେ କେତେ ଆଶା ରଖିଥାଏ ଯେ ବୋହୂ ଆସିବ ଓ ତା'ର ସେବା ଶୁଶ୍ରୂଷା କରିବ, ତା' କଥା ମାନିବ। ଏପରି ଆଶା ରଖୁଥିବା ଶାଶୁ କଣ ବୋହୂର ଅହିତ କାମନା କରି ପାରିବ? ଏବେ ତୋର ପିଲାବେଳ, ଶାଶୁ କଥା ତୋତେ ଖରାପ ଲାଗୁଛି। ତୁ ମାଆ-ବାପାଙ୍କୁ ଛାଡ଼ି ଏଠିକି ଆସିଲୁ, ତେବେ କଣ ଜଣେ ଶାଶୁକୁ ସୁଖୀ କରି ପାରିବୁ ନାହିଁ? ସେ କେତେଦିନ ବା ବଞ୍ଚିବ! ତୁ ଏ ଘରର ମାଲିକାଣୀ। ବାହାର ଲୋକ ତୁମ ଦୁହିଙ୍କ କଳିତକରାଳ ଶୁଣି ତୋତେ ହିଁ ଦାୟୀ କରିବେ। ତେଣୁ ତୁ ଏପରି ବ୍ୟବହାର କରିବୁ, ଯଦ୍ୱାରା ତୋର ଶାଶୁ ସବୁବେଳେ ପ୍ରସନ୍ନ ରହିବ। କେତେବେଳେ ତୋ ମୁହଁରୁ କଟୁ ବଚନ ବାହାରିଗଲେ ଶାଶୁଙ୍କ ପାଦତଳେ ପଡ଼ି କ୍ଷମା ମାଗିବୁ। ଏହା କଲେ ତୋ'ଶାଶୁ ଉପରେ ଉତ୍ତମ ପ୍ରଭାବ ପଡ଼ିବ ଏବଂ ଘରର ଶୋଭା ବଢ଼ିବ। ତୁ ଖରାପ ହେଲେ ସମଗ୍ର ପରିବାର ଅଶାନ୍ତ ହେବ। ସାରା ପରିବାର ପାଇଁ ତୁ କାହିଁକି ବୃଥାଟାରେ ଦାୟୀ ହେବୁ? ତେଣୁ ଗୁରୁଜନଙ୍କ ଆଜ୍ଞା ପାଳନ କର। ସକାଳେ ଓ ସନ୍ଧ୍ୟାରେ ସେମାନଙ୍କ ଚରଣ ସ୍ପର୍ଶ କର। ଶାଶୁ କିଛି କଟୁ ବଚନ କହିଲେ ସଙ୍ଗେ ସଙ୍ଗେ ଉତ୍ତର ନ ଦେଇ, ଅନ୍ୟ ସମୟରେ ତାଙ୍କୁ ବୁଝାଇ ଦେବୁ। ସେ ବୁଝନ୍ତୁ ବା ନ ବୁଝନ୍ତୁ, ସେଥିରେ ତୋତେ ଦୋଷ ଲାଗିବ ନାହିଁ।

**ପ୍ରଶ୍ନ**—ପିତାମାତା ପରସ୍ପର କଳହ କଲେ ପୁତ୍ର କ'ଣ କରିବ?

**ଉତ୍ତର**—ଯେତେଦୂର ସମ୍ଭବ ପିତାଙ୍କ ଅଜ୍ଞାତରେ ସେ ମାଆଙ୍କ ପକ୍ଷ ନେବ। ସେ ପିତାଙ୍କୁ କହିବ—ବାପା! ଆପଣ ଆମ ଘରର ମୁରବି। ମାଆ ନିଜ ମନର କଥା ଆପଣଙ୍କୁ ହିଁ କହିବ। ଆପଣଙ୍କ ଛଡ଼ା ଆଉ କିଏ ତା' କଥା ଶୁଣିବ? ବିବାହ ବେଳେ ଆପଣ ଅଗ୍ନି ଓ ପୁରୋହିତଙ୍କୁ ସାକ୍ଷୀ ରଖି ଯେଉଁ ବଚନ ଦେଇଥିଲେ, ତାହା ପାଳନ କରିବା ଉଚିତ। ମାଆ ତା' ପ୍ରତିଜ୍ଞା ପାଳନ କରୁ ବା ନ କରୁ, ସେଥିପ୍ରତି ବିଚାର ନ କରି ଆପଣ ନିଜ କର୍ତ୍ତବ୍ୟ କରିବା ଉଚିତ। ଆପଣ ମର୍ଯ୍ୟାଦା ରକ୍ଷା କଲେ ମୋର ଏବଂ ମାଆର ଲୋକ-ପରଲୋକରେ ମଙ୍ଗଳ ହେବ। ଆପଣ ଆମ କଥା ନ ବୁଝିଲେ ଆଉ କିଏ ବୁଝିବ? ମୁଁ ଆପଣଙ୍କୁ ଉପଦେଶ ଦେଉ ନାହିଁ, କେବଳ ସ୍ମରଣ କରାଇ ଦେଉଛି। ମୁଁ କୌଣସି ଅନୁଚିତ ବଚନ କହୁଥିଲେ ମୋତେ କ୍ଷମା ଦେବେ। ***'କ୍ଷମା ବଡ଼ନକୋ ଚାହିୟେ, ଛୋଟନକୋ ଉତ୍ପାତ। କହା ବିଷ୍ଣୁକୋ ଘଟ ଗୟୋ, ଜୋ ଭୃଗୁ ମାରୀ ଲାତ।'*** ଭୃଗୁ ନାତ ମାରିବାରୁ ବିଷ୍ଣୁ ଭଗବାନଙ୍କର କିଛି ହାନି ହେଲା ନାହିଁ। ବାସ୍ତବରେ ତାଙ୍କ ମହତ୍ତ୍ୱ ବଢ଼ିଲା। ତେଣୁ

ଆପଣ ନିଜେ ବିଗ୍ଭର କରନ୍ତୁ। ଆପଣ ତ ସବୁ କଥା ଜାଣନ୍ତି! ମୁଁ କ'ଣ ବା ବୁଝାଇବି!

ପରିବାରର ପ୍ରତ୍ୟେକ ବ୍ୟକ୍ତି ନିଜ ଅଧିକାରକୁ ତ୍ୟାଗ କରି ଅନ୍ୟର ଅଧିକାରକୁ ରକ୍ଷା କଲେ ଗୃହରେ କଳହ ହୁଏ ନାହିଁ। ବ୍ୟକ୍ତି ନିଜେ ଯେପରି ଆଦର-ସମ୍ମାନ ଗ୍ଭହେଁ, ଅନ୍ୟମାନଙ୍କୁ ମଧ୍ୟ ସେହିପରି ଦେବା ଉଚିତ।

**ପ୍ରଶ୍ନ**—ଶାଶୁ ପୁତ୍ରର ପକ୍ଷ ନେଇ ବୋହୂକୁ ହଇରାଣ କଲେ ବୋହୂ କ'ଣ କରିବ?

**ଉତ୍ତର**—ବୋହୂ ବୁଝିବା ଉଚିତ—ମୁଁ ଅନ୍ୟ ଘରୁ ଆସିଛି। ଏମାନେ ଏହି ଘରର ଅଧିକାରୀ। ଏମାନେ ଯାହା କହିବେ ଓ କରିବେ, ମୁଁ ସେଥିରେ ସମ୍ମତ ହେବା ଆବଶ୍ୟକ। ଏମାନଙ୍କ ଭାବନାକୁ ନେଇ ମୁଁ ଚଳିବି। ଏମାନେ ଯେମିତି ଖୁସୀ ହେବେ, ମୁଁ ସେହି କାମ କରିବି। ବୋହୂ ଶାଶୁ ସଙ୍ଗେ ଦ୍ୱେଷ ନ କରି ଉତ୍ତମ ବ୍ୟବହାର କରିବା ଉଚିତ। ସେ ନିଜ ଭାବନାକୁ ଖରାପ ନ କରି ଭଗବାନଙ୍କୁ ଡାକିବା ଉଚିତ—ହେ ପ୍ରଭୁ! ଏମାନଙ୍କୁ ସଦ୍‌ବୁଦ୍ଧି ଦିଅ ଓ ମୋତେ ସହିବାର ଶକ୍ତି ଦିଅ।

**ପ୍ରଶ୍ନ**—ସ୍ୱାମୀ ଓ ଶ୍ୱଶୁର ପରସ୍ପର ମଧ୍ୟରେ କଳହ କଲେ ବୋହୂ କ'ଣ କରିବ?

**ଉତ୍ତର**—ନିଜର ସ୍ୱାମୀକୁ ବୁଝାଇବ—ବାପା ଏ ଘରର ଅଧିକାରୀ ଅଟନ୍ତି। ଧନ, ସମ୍ପତ୍ତି, ଘର, ବୈଭବ ଆଦି ସେ ଅର୍ଜନ କରିଛନ୍ତି। ତୁମ ମାଆଙ୍କୁ ମଧ୍ୟ ସେ ଆଣିଛନ୍ତି। ତେଣୁ ତାଙ୍କୁ ସବୁପ୍ରକାର ସମ୍ମାନ କରିବା ଉଚିତ। ତାଙ୍କ କଥା ଶୁଣିବା ନ୍ୟାଯ୍ୟ, ଧର୍ମ ଓ କର୍ତ୍ତବ୍ୟ। ତୁମେ ତାଙ୍କ ସମ୍ପତ୍ତିର ସ୍ୱାଭାବିକ ଉତ୍ତରାଧିକାରୀ। ସେ ଯାହା କହିଲେ ବି ତୁମେ ତାଙ୍କ କଥା ମାନିବା ଉଚିତ। ତୁମେ ଶରୀର, ମନ, ବାଣୀ, ଆଦି ଦ୍ୱାରା ତାଙ୍କୁ ସମ୍ମାନ ଦେବା ଉଚିତ। କ୍ରୋଧବଶତଃ ସେ କିଛି କଟୁ ବଚନ କହିଲେ ସୁଦ୍ଧା ତାଙ୍କୁ ସବୁଠୁ ବଡ଼ ହିତାକାଂକ୍ଷୀ ମଣିବ। ତାଙ୍କ ମନରେ ଦୁଃଖ ଦେବ ନାହିଁ। ମୁଁ ମଧ୍ୟ କିଛି ଅନୁଚିତ କଥା କହିଲେ ତାହା ନ ଶୁଣି ପିତାଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରିବ।

**ପ୍ରଶ୍ନ**—ସ୍ୱାମୀ ଓ ପୁତ୍ର ପରସ୍ପର ମଧ୍ୟରେ କଳହ କଲେ ସ୍ତ୍ରୀର କର୍ତ୍ତବ୍ୟ କ'ଣ?

**ଉତ୍ତର**—ସ୍ତ୍ରୀ ସ୍ୱାମୀଙ୍କ ପକ୍ଷ ନେବ ଓ ପୁତ୍ରକୁ ବୁଝାଇବ—ପୁଅ! ତୋର ବାପା ଯାହା କହୁଥାନ୍ତୁ ପଛେ ବାସ୍ତବରେ ତାଙ୍କ ହୃଦୟରେ ତୋ ପ୍ରତି ହିତଭାବନା ରହିଛି।

ସେ ତୋର ଅହିତ କରନ୍ତି ନାହିଁ ଏବଂ କେହି ତୋର ଅହିତ କଲେ, ତାହା ସହନ କରନ୍ତି ନାହିଁ। ଏହା ହୃଦୟଙ୍ଗମ କରି ପିତାଙ୍କ ସେବାରେ ତତ୍ପର ରହ। ମୋତେ ପଛେ ହତାଦର କର, କିନ୍ତୁ ପିତାଙ୍କୁ ସର୍ବଦା ଆଦର କର। ବାସ୍ତବରେ ସେ ଆମର ମୁରବି ଓ ଦେବତା ଅଟନ୍ତି। ମୋତେ ହତାଦର କଲେ ମୁଁ ତୋ ପ୍ରତି କ୍ଷୁବ୍ଧ ହେବି ନାହିଁ। ପରନ୍ତୁ ତୋର ପିତା ଅସନ୍ତୁଷ୍ଟ ହେବା ଉଚିତ ନୁହେଁ। ତାଙ୍କୁ ପ୍ରସନ୍ନ ରଖିବା ଆମ ସମସ୍ତଙ୍କର କର୍ତ୍ତବ୍ୟ।

**ପ୍ରଶ୍ନ**—ପତ୍ନୀ ଓ ପୁତ୍ର ପରସ୍ପର ମଧ୍ୟରେ କଳହ କଲେ ଗୃହସ୍ୱାମୀ କ'ଣ କରିବେ?

**ଉତ୍ତର**—ସେ ବୁଝାଇବେ—ପୁଅ! ମାଆକୁ ପ୍ରସନ୍ନ ରଖିବା ତୋର ବିଶେଷ କର୍ତ୍ତବ୍ୟ। ସଂସାରରେ ଯେତେ ସମ୍ବନ୍ଧ ଅଛି, ମାଆର ସମ୍ବନ୍ଧ ସବୁଠାରୁ ଉଚ୍ଚରେ। ତେଣୁ ନିଜ ସ୍ତ୍ରୀର ବଶୀଭୂତ ହୋଇ ମାଆ ମନରେ ଦୁଃଖ ଦିଅ ନାହିଁ।

ପତ୍ନୀକୁ କହିବା ଉଚିତ—ତୁମେ ପୁତ୍ରକୁ ଗର୍ଭରେ ଧରିଛ, ଜନ୍ମ ଦେଇଛ, କ୍ଷୀର ପିଆଇଛ ଏବଂ କୋଳରେ ଝାଡ଼ା-ପରିସ୍ରା କରିଥିଲେ ମଧ୍ୟ ତାହାକୁ ପ୍ରସନ୍ନତାର ସହିତ ସଫା କରିଛ। ଏବେ ଯଦି ସେ କଟୁ ବଚନ କହେ, ତଥାପି ପ୍ରିୟ ପୁତ୍ର ବୋଲି ଭାବି ତାକୁ କ୍ଷମା ଦିଅ; କାରଣ ତୁମେ ମାଆ। ପୁତ୍ର କୁପୁତ୍ର ହୋଇପାରେ, କିନ୍ତୁ ମାତା କୁମାତା ହୋଇପାରେ ନାହିଁ—**'କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନ ଭବତି।'**

**ପ୍ରଶ୍ନ**—ପରିବାର ମଧ୍ୟରେ ପ୍ରୀତି ଓ ସୁଖଶାନ୍ତି କିପରି ରହିବ?

**ଉତ୍ତର**—ମନୁଷ୍ୟ ନିଜ ଉଦ୍ଦେଶ୍ୟକୁ ଭୁଲିଗଲେ ସବୁ ପ୍ରକାର ବାଧା ଓ ବିପତ୍ତି ଆସେ। ସବୁ ବାଧାବିଘ୍ନ ସତ୍ତ୍ୱେ ନିଜର ଆଧ୍ୟାତ୍ମିକ ଉନ୍ନତିକୁ ଧ୍ୟେୟ ବୋଲି ଗ୍ରହଣ କଲେ, ସେ ସୁଖ-ଦୁଃଖକୁ ଦେଖେ ନାହିଁ—**'ମନସ୍ୱୀ କାର୍ଯ୍ୟାର୍ଥୀ ନ ଗଣୟତି ଦୁଃଖଂ ନ ଚ ସୁଖମ୍।'** ଫଳରେ ନିଜ ସ୍ୱାର୍ଥ ଓ ଅଭିମାନକୁ ତ୍ୟାଗ କରିବା ତା'ପକ୍ଷରେ ଦୁଃସାଧ୍ୟ ହୁଏ ନାହିଁ। ସ୍ୱାର୍ଥ ଓ ଅଭିମାନ ଛାଡ଼ିଦେଲେ ବ୍ୟବହାରିକ କ୍ଷେତ୍ରରେ କୌଣସି ବାଧାବିଘ୍ନ ପଡ଼େ ନାହିଁ। ଯେତେବେଳେ ମନୁଷ୍ୟ ନିଜର ମାନସମ୍ମାନ ଗ୍ୱହେଁ, ନିଜ କଥାରେ ଜିଦ୍ ଧରେ ଓ ସ୍ୱାର୍ଥସିଦ୍ଧି ଗ୍ୱହେଁ, ସେତେବେଳେ ବ୍ୟବହାରିକ କ୍ଷେତ୍ରରେ ଓ ପାରସ୍ପରିକ ପ୍ରୀତିରେ ବାଧା ସୃଷ୍ଟି ହୁଏ।

ପରିବାରର ପ୍ରତ୍ୟେକ ବ୍ୟକ୍ତି ଯେତେବେଳେ ପରସ୍ପରର ମଙ୍ଗଳ ଗ୍ୱହାନ୍ତି, ସମସ୍ତଙ୍କୁ ଆଦର-ସମ୍ମାନ କରନ୍ତି ଓ ସେମାନଙ୍କର ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ଚିନ୍ତା କରନ୍ତି, ସେତେବେଳେ ସମସ୍ତେ ପ୍ରସନ୍ନ ରହନ୍ତି। କେହି ଅପ୍ରସନ୍ନ ହେଲେ ସୁଦ୍ଧା ଭବିଷ୍ୟତରେ

ସେ ବିଚାର କରି ବୁଝିପାରେ ଯେ ସେ ନିଜେ ଭୁଲ୍ କରିଛି। ତା'ର ଅପ୍ରସନ୍ନତା ସ୍ଥାୟୀ ରହେ ନାହିଁ। ଖେଳରେ ମାତି ପିଲାମାନେ ପଢ଼ିବାକୁ ଚାହାନ୍ତି ନାହିଁ, ପରେ ଭୁଲ୍ ବୁଝି ପାରନ୍ତି। ସେହିପରି ଭଲ ଉପଦେଶକୁ କୌଣସି ବ୍ୟକ୍ତି ବୁଝି ନ ପାରିଲେ ମଧ୍ୟ ଭବିଷ୍ୟତରେ ନିଶ୍ଚୟ ବୁଝି ପାରିବ। କେହି ବୁଝୁ ବା ନ ବୁଝୁ, ଆମେ ଉଚିତ ଉପଦେଶ ଦେଲେ ଆମ ମନରେ ସନ୍ତୋଷ ମିଳେ ଯେ ଅନ୍ୟର ହିତ ପାଇଁ ଆମେ ଏପରି କହିଛୁ।

ପରସ୍ପର ମଧ୍ୟରେ ପ୍ରୀତି ରହିଲେ ପରିବାରରେ ସୁଖ-ଶାନ୍ତି ବିରାଜିତ ହୁଏ। ସ୍ୱାର୍ଥ ଓ ଅଭିମାନ ତ୍ୟାଗରୁ ସ୍ନେହ ପ୍ରୀତି ଉତ୍ପନ୍ନ ହୁଏ। ଅନେକ ସମୟରେ ଆମେ ଅନ୍ୟ ସହିତ ଶିଷ୍ଟ ବ୍ୟବହାର କଲେ ସୁଦ୍ଧା ସେ ସ୍ୱାର୍ଥର ବଶୀଭୂତ ହୋଇ ଆମ ପ୍ରତି କଟୁ ବଚନ ପ୍ରୟୋଗ କରେ ଓ ମନେ ମନେ ଅପ୍ରସନ୍ନ ହୁଏ। ଏହା ଦେଖି ଆମ ମନରେ ଦୁଃଖ ହୁଏ। ପ୍ରକୃତରେ ଆମ ମନରେ ସୁଖ ପାଇବାର ସୂକ୍ଷ୍ମ ଇଚ୍ଛା ଥିବାରୁ ହିଁ ଏପରି ଦୁଃଖ ହୁଏ। ଆମର ଉତ୍ତମ ବଚନ ଶୁଣି ଅନ୍ୟ ବ୍ୟକ୍ତି ତାତ୍କାଳିକଭାବେ ସୁଖୀ ବା ପ୍ରସନ୍ନ ହେଲେ ଆମକୁ ଏକ ପ୍ରକାର ସୁଖ ମିଳିଥାଏ। ଏହି ସୁଖର ଇଚ୍ଛା ଛାଡ଼ିଦେବା ଉଚିତ।

ଅନ୍ୟମାନଙ୍କୁ ଆଦର ଓ ପ୍ରେମ କରିବା ଆମର କର୍ତ୍ତବ୍ୟ। ଆମର ଭାବନା ଓ ଆଚରଣର ପ୍ରଭାବ ଅନ୍ୟମାନଙ୍କ ଉପରେ ନିଶ୍ଚୟ ପଡ଼ିବ। କଠୋର ହୃଦୟର ବ୍ୟକ୍ତି ଉପରେ ସମ୍ଭବତଃ ପ୍ରଭାବ ପଡ଼ି ନ ପାରେ; ତଥାପି ଆମେ ଯଥୋଚିତ କର୍ତ୍ତବ୍ୟ କଲୁ—ଏହା ଭାବି ସନ୍ତୋଷ ଲାଭ କରିବା ଉଚିତ। ଆମ ସନ୍ତୋଷରୁ ପରିବାରରେ ସୁଖଶାନ୍ତି ବିରାଜମାନ କରିବ।

